# ଜୀବନ ସିନ୍ଧୁ



ବୈକୁଣ୍ଠନାଥ ପଟ୍ଟନାୟକ

# କାବ୍ୟ-ସଞ୍ଚୟନ

—ପରିବର୍ଦ୍ଧିତ ସଂସ୍କରଣ—

ସଟୀକ ପାଠ ସଂଗ୍ରହ, ମୃତ୍ତିକା ଦର୍ଶନ ଓ ଅନ୍ୟାନ୍ୟ

ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ

ମୂଲ୍ୟ—ଏକଟଙ୍କା ପଚିଶ ନୂଆ ପଇସା

ପ୍ରକାଶକ

ଓଡ଼ିଶା ପବ୍ଲିଶିଂ ହାଉସ୍
ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର

ତୃତୀୟ ପରିବର୍ଦ୍ଧିତ ମୁଦ୍ରଣ—ଏକ ହଜାର
୧୯୫୮

# ଆତ୍ମକଥା

ଖ୍ରିଷ୍ଟାନ୍ କଲେଜର କେତେକ ଶିକ୍ଷକ ବନ୍ଧୁଙ୍କର ଅନୁରୋଧ କ୍ରମେ କାବ୍ୟ ସଞ୍ଚୟନର ସଂକ୍ଷିପ୍ତ ସଂସ୍କରଣ ପ୍ରକାଶ କରାଗଲା । ଗତ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ମୂଳ ସଞ୍ଚୟନରୁ କେତୋଟି ରଚନା କଲେଜମାନଙ୍କର ବି. ଏ. କ୍ଲାସର ପାଠ୍ୟରୂପେ ମନୋନୀତ କରି ଆଧୁନିକ ସାହିତ୍ୟ ପ୍ରତି ଆନୁକୂଲ୍ୟ ପ୍ରକାଶ କରିଥିଲେ । ତଜ୍ଜନିତ ଆନନ୍ଦ ଓ ଆତ୍ମତୃପ୍ତି ପ୍ରକାଶ କଲା ପୂର୍ବରୁ ଶିକ୍ଷକ ମହଲରୁ ଅନୁରୋଧ ହେଲା—ପାଠ୍ୟ ରଚନାଗୁଡ଼ିକର ଟୀକା (annotation) କରିବାକୁ ହେବ । ପୃଥିବୀ ପୃଷ୍ଠରେ କୌଣସି ଲେଖକର ଭାଗ୍ୟରେ ଟୀକାକାର ହେବା ଘଟିଛି କି ନା, ସ୍ମରଣ ହେଉ ନାହିଁ । ମାତ୍ର ଯଦି କୌଣସି ଲେଖକ ବିଂଶବର୍ଷ ଶିକ୍ଷକତାର ଅଭିଜ୍ଞତା ଅର୍ଜନ କରିଥିବେ, ସେ ଏ ଧରଣର ଅନୁରୋଧର ମର୍ଯ୍ୟାଦା ବୁଝିବେ । ଲେଖକ ତାହା ବୁଝି ତଦନୁରୂପ କାର୍ଯ୍ୟ କରିଅଛି । ମାତ୍ର ଟୀକାକାର ଭାବରେ କେତେଦୂର ସଫଳତା ହାସଲ କରିଛି, ତାହା ପାଠକମାନେ ବିଚାର କରି ଲେଖକକୁ ଭବିଷ୍ୟତ୍‌ରେ କ୍ଷମା ଦେଲେ ଲେଖକ ପରମ ଆପ୍ୟାୟିତ ହେବ । ଶିକ୍ଷକ ଭାବରେ ଶ୍ରେଣୀ ମଧ୍ୟରେ କୌଣସି ରଚନାର ଦୃଷ୍ଟିଭଙ୍ଗୀ ବା ଅନ୍ତର୍ନିହିତ ଭାବ ବୁଝାଇ ଦେବା ଯେତେ ସହଜ, ଲେଖକ ପକ୍ଷେ ପାଠ ଟୀକା ସଜାଇ ଲେଖିବା କଷ୍ଟସାଧ୍ୟ ନ ହେଲେ ମଧ୍ୟ କାର୍ଯ୍ୟଟା ଅତ୍ୟନ୍ତ ରୁଚିକର ନୁହେଁ । ତେଣୁ ଶେଷାଂଶର ତ୍ରୁଟୀ ଓ ଅପୂର୍ଣ୍ଣତା ବିଷୟରେ ଲେଖକ ଉଦାସୀନ ନ ହୋଇ ସଦା ଜାଗ୍ରତ । ସେ ତ୍ରୁଟୀ ଗୁଡ଼ିକ ଶିକ୍ଷାଦାନ

ପ୍ରସଙ୍ଗକ୍ରମେ ଯଦି କୌଣସି ଶିକ୍ଷକ ବନ୍ଧୁ ଦର୍ଶାଇ ଦିଅନ୍ତି, ତେବେ ମୁଁ ତାଙ୍କ ପ୍ରତି କୃତଜ୍ଞ ରହିବି ଓ ଭବିଷ୍ୟତରେ ତାର ପରିମାର୍ଜ୍ଜନା ଲାଗି ଯତ୍ନବାନ୍ ହେବି ।

ବନ୍ଧୁମାନଙ୍କ ଅନୁରୋଧକ୍ରମେ ବି. ଏ. କ୍ଲାସର ପାଠ୍ୟ-ରଚନା ସହିତ ଏହି ସଂକ୍ଷିପ୍ତ ସଂସ୍କରଣରେ "ମୃତ୍ତିକା ଦର୍ଶନ", "ହରିଜନ" ପ୍ରଭୃତି ଆଉ କେତେଗୋଟି ଜନପ୍ରିୟ ରଚନା ସନ୍ନିବେଶିତ କରାଗଲା । ଆଶା, ସେଗୁଡ଼ିକ ଜନସାଧାରଣଙ୍କ ଦ୍ୱାରା, ବିଶେଷତଃ କଲେଜ ଶ୍ରେଣୀମାନଙ୍କରେ ଆଦୃତ ହେବ ।

ଟ୍ରେନିଂ ସ୍କୁଲ
କେନ୍ଦୁଝର ଗଡ଼
ତା ୧।୧୨।୧୯୪୮



ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ

# ଦ୍ୱିତୀୟ ସଂସ୍କରଣର ଆତ୍ମକଥା

କାବ୍ୟ ସଞ୍ଚୟନର ସଂକ୍ଷିପ୍ତ କଲେଜ-ସଂସ୍କରଣ ପାଞ୍ଚବର୍ଷ ତଳେ ପ୍ରକାଶିତ ହୋଇଥିଲା । ପାଞ୍ଚବର୍ଷ ପରେ ସେଗୁଡ଼ିକ ନିଃଶେଷ ହୋଇଥିବାରୁ ପୁନର୍ମୁଦ୍ରଣର ଆବଶ୍ୟକତା ଅନୁଭୂତ ହେଲା । ଯୁବକ ସମାଜରେ ଏହା ଆଦୃତ ହେବା ହେତୁ ଆଉ ଗୁଡ଼ିଏ ନୂତନ ରଚନା ଯୋଗ କରିବାକୁ ପଡ଼ିଲା । ପାଠ୍ୟ ବିଷୟ ଦଶଗୋଟି ପଦ୍ୟ ପରେ ଅଧିକ ଅଠର ଗୋଟି ପଦ୍ୟ ଏ ସଂସ୍କରଣରେ ସଂଯୁକ୍ତ କରାହୋଇଥିବାରୁ ଓ ପ୍ରଚ୍ଛଦ ପଟର ଶିଳ୍ପ ପରିବର୍ତ୍ତନ ହେତୁ, ମୂଲ୍ୟର କିଞ୍ଚିତ ଅଭିବୃଦ୍ଧି ସ୍ପୃହଣୀୟ ନହେଲେ ମଧ୍ୟ କ୍ଷମଣୀୟ । ଉକ୍ତ ଅଠର ଗୋଟି ପଦ୍ୟ ସମ୍ପୂର୍ଣ୍ଣ ନୂତନ ଓ ଅନ୍ୟାନ୍ୟ ସଞ୍ଚୟନରେ ସେମାନଙ୍କର ସତ୍ତା ନଥିଲା । ପାଠକମାନଙ୍କର ଉତ୍ସାହ ତଥା ଭବିଷ୍ୟତରେ ସେ ସବୁ ପାଠ୍ୟ ତାଲିକା ଭୁକ୍ତ ହେବା ଆଶାରେ ବର୍ତ୍ତମାନ ସଂସ୍କରଣର କଳେବର ବୃଦ୍ଧି କରାଗଲା । ମୁଦ୍ରାଯନ୍ତ୍ରର ଦୁଷ୍ଟୀ କ୍ଷୁଦ୍ର ଶୁଦ୍ଧିପତ୍ରରେ ମାର୍ଜିତ ହୋଇଅଛି । ଆଶା, ଏହି ପରିବର୍ଦ୍ଧିତ ସଞ୍ଚୟନ ଗ୍ରନ୍ଥ ତଥା ସାହିତ୍ୟ-ସୁଧୀ ମଣ୍ଡଳୀରେ ଆଦୃତ ହେବ । ପ୍ରଚ୍ଛଦପଟ ପରିକଳ୍ପନା ଶିଳ୍ପୀ-ବନ୍ଧୁ ଶ୍ରୀଯୁକ୍ତ ଗୋପାଳ କାନୁନ୍‌ଗୋଙ୍କର କୃତି ।

ପୁରୀଜିଲ୍ଲା ସ୍କୁଲ,
୧୯୬୩



ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ

ପୁରୀ ଜିଲ୍ଲା ସ୍କୁଲ ସମୂହର ଭୂତପୂର୍ବ ଇନ୍‌ସପେକ୍ଟର ପୂଜ୍ୟପାଦ
ପିତୃବ୍ୟ ଶ୍ରୀଯୁକ୍ତ ଲୋକନାଥ ପଟ୍ଟନାୟକଙ୍କ
କରକମଳେ—

# ସୂଚୀପତ୍ର

—:o:—

—ଏକ—

## ଯାତ୍ରା ସଙ୍ଗୀତ—

ଜୀବନପାନ୍ଥ ମୋ ଭରିଛ କେତେ ମତେ
ନ ଦେଇ କିଛି ବୋଲି କହିବ କି ହେ ଆଜି ?
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ଭବ ସାଗରେ ବହିଯାଉ ।
କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଚିଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରଇ ଟାଣି
ମରତ ପ୍ରବାସୀ ମୁଁ ନ ଜାଣି ଆଣେ ଦାଉ ।୧।

ମାନସହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦୋଷେ ପଥ ହୁଡ଼ି ଭରମେ ଅବିରତ,
ଅଳପ ତୃଷା କ୍ଷୁଧା ଲଭି ତୁମରି ସୁଧା
ତୃପତ ହେଲି, ତେବେ ଲେଉଡ଼ିଇଁ ଏ ମରତ ।

ଯାହା ସଙ୍ଗୀତ

ନିଜ ବାସନା ଜାଲେ ବିକଳ ବନ୍ଧିତ,
ତମିର ଅଙ୍କେନେ ମିଳେ କି ଅମୃତ ?
ଛୁଡ଼ିବ ଦୂରେ ଯିବ ପାଗ୍ବାରେ ଘସିବ
ଲଙ୍ଘି ହ୍ଵମଗିର ଯିବ ଗୋ ବେଳ ଥାଉଁ । ୨ ।

ଦେଇଛ ପ୍ରିୟା ପ୍ରାଣେ ଅମର ପ୍ରୀତି ଭରି
ମୋ ଶିଶୁ ହୃଦନେ ଅମର ମୋର ଆଶା,
ପ୍ରଭାତ ସନ୍ଧ୍ୟାରେ ଖେଳାଇ ରୂପ ତେଜ
ବିକଳ କଣ୍ଠେ ମୋ ଫୁଟାଇଛ ତ ଭାଷା,
ଗାଇବ ବନ୍ଦୀ ମୁଁ ଚରଣ ବନ୍ଦନା,
ସେଥିଲାଗି ଏ ବୀଣାରେ ଦେଇଛ ମୂର୍ଚ୍ଛନା,
ସେ ସୁଖ କଣ ହେଲା ଲଗାଇଲି ମୁଁ ଖେଳା
ମିଳନ ମଧୁରାତି ପାହିଲା ଝୁଣ୍ଟି ଝୁଣ୍ଟି ।
ମିଥ୍ୟା ବିପଣୀରେ ବଣିକ ମରଣ ଯେ
ନ ଚେତି ତଳେ ଯାହା କଲି ମୋ ମଣି ଭାଙ୍ଗ ! ୩ ।

ପଞ୍ଜର ତରୁ ମୁଁ ଗୋ ପଲାତ ମୋ ପତର
ନିରାଶା ପରଶରେ ଝରନ୍ତି ଅକାଳରେ,
ନାହିଁ ତ ତେବେ ତଳେ ଶୋଚନା ଖେଦ ମୋର
ହୃଦୟମଣି ମୋର ସାଗର ଅତଳରେ;
ପରାଣ କୁଞ୍ଜେ ମୋ ତାର ମୁରଲୀ ଧ୍ଵନି !
ପରାଣ-ପବନେ ଗୋ ତା ଶୁଭ ଆଗମନୀ,

ଜୀବନେ ଦେଖା ନେଖା ଭିଆଣ ସବୁ ତାର
ସେ ମହାଦାମ୍ନ ହସେ ପଗଣେ ଦେଖିନାହୁଁ ?
ତା ପରଶେ ପଞ୍ଚ ଜୀର୍ଣ୍ଣ ଜୀବତନୁ
ପଲ୍ଲବିତ ଆହା ଶୋଚନା କବା ଆଜୁ ? ୪ ।

ସ୍ଥଳରେ ସ୍ଥଳ ମନ ନତ୍ୟ ମଧୁବନ
ଦେଖିବୁ ପ୍ରିୟ ପୁଗସ, ଅଦୂରେ ଗୋଲୋକରେ;
ଅଦୂର ପଥେ ଆଜ ମିଳନ ତାର ସାଥେ
ବଜସ୍ବ ରଥେ ତୋର ଜୀବନ ଆଲୋକରେ !
ଯାତ୍ରୀପଥ ତୋର ପଲକେ ହେବ ଶେଷ,
ଶେଷରେ ସନ୍ଦେହ ସକଳ ତୋର କ୍ଳେଶ,
ଧନ୍ୟ ହେବୁ ଆଜ ପୁଣ୍ୟ ଦରଶନେ,
ଷୁଣ୍ଣ ସବୁ ପାପ ଦୁଷ୍କୃତିର ରାଜୁ ।
ଜୀବନ ଦେବତା ମୋ ଜୀବନ ପଥେ ବଳେ,
ତରଣୀ ମୋର ତାର ସାଗରେ ବହିଯାଉ ! । ୫ ।

[ ୧୯୩୧ ]

—ଦୁଇ—

## ବର୍ଷା ବରଣ—

ଗୁରୁ ଗରଜନ କରି ଆସ !
ଘନ ଆସ !
ନଅ ନଅ ବର୍ଣ୍ଣର ପ୍ରାସ,
ଘନ ଆସ !
ଉପରୁ ଉପଗ୍ର ଉଡ଼ାଇ,
ବିଦ୍ୟୁତ କୌତୁକ ଲଗାଇ,
ସୃଷ୍ଟି ପୁଲକ ସୁଖ ଜଗାଇ,
ନିର୍ଜୀବ ମୃତ ଦୁଖ ନାଶ ।
ଘନ ଆସ ! ୧ ।

ତପ୍ତ ବିକଳ ଏଇ ଧରଣୀ,
ଶୂନ୍ୟ ବିଜନ ଦୂର ସରଣି,
ଶ୍ରୀହୀନ ବିବସ କେ ରମଣୀ,
ଆଗମନ ପଥେ ମେଲି ବାସ;
ଡାକେ ଆସ !
ଘନ ଆସ ! ୨ ।

ଆସ ଆସ ନଭର ନବଘନ
ଗୌରବରେ ଆବରି ଆକାଶ,
ଅମୃତ ଜୀବନ ପ୍ରକାଶ,
ଅମୃତ ଜୀବନର ଜୟ ।
ଘନ ଆସ ! । ୩ ।

ଆତୁର ତଟିନୀ ଡାକେ ତୃଷ୍ଣ,
ଡାକେ ଗିରି କାନ୍ତାର ରୁକ୍ଷ,
ହର ଘନ ଧରଣୀର ଦୁଃଖ,
ଡାକେ ତରୁ ପଲ୍ଲବ ଘାସ,
ଘନ ଆସ ! । ୪ ।

ଡାକେ ଆଜି ନିର୍ଜୀବ କଣ୍ଠ ହେ,
ନିର୍ଜୀବ-ଦୁଃଖ-ଅନୁଭବୀ ହେ,
ଶିର ନତ ନୃତ୍ୟର ଛନ୍ଦ ହେ,
କାହିଁ ନବ ନୃତ୍ୟ ସେ ରସ,
ଘନ ଆସ ! । ୫ ।

ଘନ ଉତ୍ତର ଶୀତ ପବନେ,
ଆସ ମେଲି କ୍ଷିପ୍ର ସେ ଚରଣେ,
କାନ୍ତ ସ୍ନିଗ୍ଧ ଶ୍ୟାମ ବରଣେ,
ଦୁଃଖର ନାହିଁ ଅବକାଶ,
ଘନ ଆସ ! । ୬ ।

ହ୍ୟାରିସନ ରୋଡ଼ ॥ କଲିକତା ॥
[୧୯୩୧]

---

—ତିନି—

## ନିଶୀଥ-ଯାତ୍ରୀ—

ସେ ଯେ, ଡାକିଗଲା କିବା ଗୀତେ ।
ଆହା, ନିଶବଦ ସେ ନିଶୀଥେ ।

                    ଅନ୍ଧାର ରାତି ଆସୁଥିଲା ପାହି,
                    ଚମକି ଉଠିଲା, ସେ ପରଶ ପାଇ,
                    କିମ୍ବା, ବ୍ୟଥା ରଖିଗଲା ଚିତ୍ତେ !
                    ଆହା, ନିଶବଦ ସେ ନିଶୀଥେ ।

ସେ ଯେ, କାହା ସନ୍ଧାନେ କି ବେଦନା ଭରି
                    ବୁଲିଥିଲା ଗାଇ ଗାଇ ।
                    ତୁମେ ଶୁଣିଛ କି ତାର ସଙ୍ଗୀତ ?
                    ଗମ୍ଭୀର ତାର ମୁକ୍ତିର ଗୀତ
                    କିଆଁ କଲା ମୋତେ ବାଇ ?
                    ମୁଁ ତା, ହୃଦୟ ରକ୍ତେ ରଞ୍ଜିତ ।

ମିଶିଛୁ ରୁଦ୍ଧ ତାର ସ୍ପନ୍ଦନ,
ଶୂନ୍ୟ ନିଶୀଥ-ହୃତ-ନନ୍ଦନ,
ଶୂନ୍ୟ ମୋ ମନ ଗୃହେଁ ପଥ ସଚକିତେ ।
ଆହା, ନିଶବଦ ସେ ନିଶୀଥେ ।

ଶୁଣିଛୁ ମୁଁ ତାର ମୁକ୍ତକଣ୍ଠେ
ନିଫଳତାର ଆନନ୍ଦ,
ସେ ଯେ, ଉପେକ୍ଷି ଚାଲିଛି ମୁକ୍ତ-ପଥିକ,
ଜୀବନର ବାଧା ବନ୍ଧ !

ପୁଛିଲି ମୁଁ ତାକୁ "ତୁମ ତୁଳେ ନେବ ନାହିଁ ?"
ସେ ଯେ, ଉଦାସ ହତାଶେ କହି କେତେ "ନାହିଁ ନାହିଁ ।"
ମୁଁ ଗୋ, ତାହା ଲାଗି କଣ୍ଠା ବାଇ ?
ମୁଁ ଗୋ, ଅଶ୍ରୁ ଦେଉଛି ବାହି ।

ସକଳ ଆପଣା କଲି ସେ ତ ପର,
ଶୂନ୍ୟ କଲି ଏ ସ୍ୱପ୍ନର ଘର,
ମୋର ଶୂନ୍ୟ ରଜନୀ କେସନେ ବା କହ କଟେ ?
ସେ ଯେ ଡାକଗଲି କବା ଗୀତେ ।

କଲିକତା,
[୧୯୩୧]

—୍ଗୀତ—

*ଅମ୍ବପାଲୀର ଉତ୍କଣ୍ଠା—

ଆଜ ମୋର ପୁରେ ଅସିବେ ସଜନ,
ଜଗତ ଆଲୋକ ଗୋ !
ବାମ ବାହୁ ଆଖି ଥରେ ଘନ ଘନ
ଅଙ୍ଗ ପୁଲକ ଗୋ !
କ ଦେଇ ପାରିବ ଦେବତା ପଦ୍ମରେ
କଳ୍ପବୃ କ ସନ୍ଧ୍ୟରେ ?
ଆସିବେ ବୁଦ୍ଧ ପୂଜାଇ ପଦ୍ମ
ରୁକ୍ଷ ଏ ମହୀରେ । ୧ ।

ହସି ହସି ଆସେ ଅରୁଣ ଏ ଊଷା
ହସିବ ମୋ ପୁର ଗୋ,
ସଫଳ ଜୀବନ ଧନ୍ୟ ସକଳ
ପୁଣ୍ୟ ମୋ ପୁର ଗୋ ।

---

*ବୈଶାଳୀର ରାଜନର୍ତ୍ତକୀ । ବୌଦ୍ଧ ଯୁଗର ସନ୍ୟାସିନୀ ।

ଉଇଁବେ ଲକ୍ଷ ସୂର୍ଯ୍ୟ ଚନ୍ଦ୍ର
 ଉଜ୍ଜ୍ୱଳ ମହିମାରେ,
ଆସିବେ ବୁଦ୍ଧ ଫୁଟିବ ପଦ୍ମ
 ମୋ କୁଟୀରେ ସନ୍ଧ୍ୟାରେ । ୨ ।

 କି ଦେବି ସଜନି କହନା ଭାବିରେ
 ନଶ୍ୱର ଦେହ ଗୋ !
 ନଶ୍ୱର ମୋର ରକ୍ତ ଅଧର;
 କ୍ଷଣସ୍ଥ ସେନେହ ଗୋ,
 କ୍ଷଣସ୍ଥ ଏ ମୋର ଚଳ ଭୃରୁ ଛଳେ
 ମୃତ୍ୟୁ ହସଇ ରେ,
 ଆସିବେ ବୁଦ୍ଧ ଆସିବେ ଭିକ୍ଷୁ
 କି ଦେବି ମୁଁ ସହି ରେ ? ୩ ।

ଯୌବନ ମୋର ଚିତ୍ତ ବକାରେ
 ସଜନି ହୋଇଛି ଭ୍ରଷ୍ଟ,
ଦେବତା ଆସନ ଶୂନ୍ୟ ହୃଦୟେ
 ମୋ ପୂଜା କୁସୁମ ନଷ୍ଟ ।
ପୋଛିବେ ପଥର ମୋ ଚକ୍ଷୁର ଦାମେ ?
 ଜଗ ବିହସଇ ରେ !
ଆସିବେ ବୁଦ୍ଧ ଆସିବେ ଭିକ୍ଷୁ
 କି ଦେବି ମୁଁ ସହି ରେ । ୪ ।

 ଭିକ୍ଷୁକ ସେ ତ ଚିର ଭିକ୍ଷୁକ
 କି ଦେବି ଭିକ୍ଷା ଗୋ ?
 ନିଃସ୍ୱ ଜୀବନେ ସେ ମୋ ପ୍ରିୟ ଲାଗି
 ଚିର ପ୍ରତୀକ୍ଷା ଗୋ !

—୯

ମନେ ଘେନେଁ ମୋର        ସବୁ ସମ୍ପଦ
ପଦେ ଅରପଇଁ ରେ
ଆସିବେ ବୁଦ୍ଧ        ଜଗତବନ୍ଦ୍ୟ
କ ଦେବ ମୁଁ ସଙ୍ଗ ରେ । ୫ ।

ଶୁଣ ନା ସଜନ        ଡାକଇ କୋକିଳ
ମଳୟ କୁଞ୍ଜରେ,
କେଉଁ ପ୍ରିୟଜନ        ବାର୍ତ୍ତା ବହ୍ନି ଗୋ
ଭ୍ରମର ଗୁଞ୍ଜରେ !
ଜଗତବନ୍ଦ୍ୟ        ଆଗମନୀ ଗାଇ
ମଳୟ ବହଇ ରେ,
ଆସିବେ ବୁଦ୍ଧ        ଜୀବନ ଆଲୋକ !
କି ଦେବ ମୁଁ ସଙ୍ଗ ରେ । ୬ ।

ସେ ଚିର ମୁକ୍ତ        ଚିର ପ୍ରଶାନ୍ତ
ଦେବେ କି ଭିକ୍ଷୁ ଦୀକ୍ଷା ?
ଭିକ୍ଷୁର ଥାଳ        ଶିରେ ବହ୍ନି ନିତ
ବଶେ ମାଗିବ ଭିକ୍ଷା
ଶୂନ୍ୟ ଜୀବନ        ଅରପିବ ପଦେ
ନେବେ କି ନା ସଙ୍ଗ ରେ ?
ଆସିବେ ଜୀବନ        ଚିର ପ୍ରିୟ ମମ
ରୁକ୍ଷ ଏ ମହୀରେ । ୭ ।

---

## ଶିଶୁ ସୃଷ୍ଟି—

ଜଗତର ଶିଶୁ ଆସ ଆସ ମୋର କୋଳେ !
ଆସ ଏ ବକ୍ଷେ ପୀରତି ସେନେହ ଝୋଳେ,
ଆସ ଆନନ୍ଦ ! ଆସ ରେ ଜୀବନ ଜହ୍ନି !
ସୃଷ୍ଟିର ଉଷା ! ସକଳ ଜୀର୍ଣ୍ଣ
ହସି ହସି ଯାଅ ଛୁଇଁ ।
ସେ ହାସେ ଝଳଶେ ସୃଷ୍ଟିର ଲୀଳାପଦ୍ମ ।
ସେ ଭାଷା ଶୁଣି ମରଇ ମିଥ୍ୟା ଛନ୍ଦ;
ମରଣ ମରଇ ଅସ୍ଥିର ପଦ ପାତେ,
ଜୀବନ ନିତ୍ୟ ମନ୍ତ୍ର ଅମର
ଗାଅ ମଙ୍ଗଳ ପ୍ରାତେ ।
ବର୍ଣ୍ଣନେ ରୂପ ମନେ ମୋର ହାହାକାର,
ମୃତ୍ୟୁ ଗୁହାରୁ ସକଳ ଜୀବନ ସାର—
ଅମୃତ ଗୀତ ଅବାଣ୍ଟେ ପଡ଼େ ଝରି,
ମନେ ଭାଳେଁ ଆହା ନିତ୍ୟାନନ୍ଦେ
ଆଜଯାଏଁ ହେଲେ ମରି ।
ଆସରେ ବକ୍ଷେ ସକଳ-ଜୀବନ-ଆଶା !
ଆସ ମୋ ଜୀର୍ଣ୍ଣ-କାବ୍ୟ-ଆଲୋକ-ଉଷା

ଛିନ୍ନ ଯେ ତାର, ସେ ପରଶେ ଯାଉ ଯୋଡ଼
ସବୁ ବନ୍ଧନ        ମରଣର ଭୟ
ଅବହେଳେ ଯାଉ ଖୋଲି ।

ନ ଶୁଣିବି ଆଜ ନ ଶୁଣିବି କାର କଥା,
ନ ଗଣିବି କିଛି ସଂଗ୍ରାମ କ୍ଷତ ବ୍ୟଥା;
ସକଳ ଆଜ ତୋ ଅର୍ଥବିହୀନ ବାଣୀ
ମର୍ତ୍ତ୍ୟର ଏଇ        ଚିର କାଙ୍ଗାଳ
ସାଇତି ରଖିବ ଗୁଣି !
ତୁଚ୍ଛ ଶୋଚନା ତୁଚ୍ଛ ସକଳ ଶ୍ରାନ୍ତି,
ପୂର୍ଣ୍ଣରେ ଆଜ ଜୀବନ ଛିନ୍ନ ଗୀତି,
ପରାଣ ପାଏ ପୂର୍ଣ୍ଣ ! ନୂହେ ରେ ତାଳି !
ଆସ ଆନନ୍ଦ        ନୃତ୍ୟ ଜୀବନ
ବକ୍ଷେ ଯାଅ ମୋ ଗୁଳି !

ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝରି,
ଶୁଷ୍କ ପତ୍ର ବାତ୍ୟା ନଏ ରେ ଉଡ଼ି;
ହସେ ପୁଣି ଉଷା ଶୁଭେ ଆଲୋକର ଗାନ !
ନବ ନବ ରୂପେ        ପୁରାଣ ଏ ଭୂମେ
ବିକଶିତ ଭଗବାନ ।
ହସି ଉଠ ଚିର ଅନ୍ଧାର ଦୀପ ମମ !
ଭ୍ରଷ୍ଟ ଭ୍ରାନ୍ତ ଶ୍ରାବଣ ବଜଦ ସମ;
ନିଅ ମୋ ଜୀବନ ସବୁ ସମ୍ବଳ ଧନ,
ନିଅରେ ଆଶିଷ ! ସବୁ ମଙ୍ଗଳ —
ଦେବ ହସି ପୁରାତନ ।

—ଛଅ—

## ବାସର ଗୃହ—

—୧—

ବାସର-ମିଳନ-ରଜନି ! ଶେଷ ଯାମ ! ଅସ୍ତାଚଳେ ଶଶୀ !
ବ୍ରୀଡ଼ା, ନମୀଳିତ ନେତ୍ରେ ପ୍ରଣୟୀରେ ମୁଗ୍‌ଧେ କହେ ହସି
ବହ୍ଲଳତା ପ୍ରଣୟିନୀ "ମନେ ଥିବ ମନେ ଥିବ ବନ୍ଧୁ ?
କହିବଟି ସତ କରି ?······ଅନଭିଜ୍ଞା ଏ ତରୁଣୀ ବଧୂ—
କହିଛୁ କି ଏତେ ଭାଗ୍ୟ ହେବ ବୋଲି ଅମର ଅଙ୍କିତ
ସେ ଚପଳ ଚିତ୍ତପଟେ ?······କିବା ଗୁଣେ ?······
ଭାଳି ସଙ୍କୁଚିତ ।
ମନେ କି ପଡ଼ିବ ବନ୍ଧୁ ଆଜିର ଏ କ୍ଷଣିକ ମାଧୁରୀ ?
ପରାଣ ପରଶି ଜ୍ୟୋସ୍ନା ପୁଣି ଏହି କ୍ଷୁଦ୍ର ସ୍ୱପ୍ନପୁରୀ ?
ମନେ କି ପଡ଼ିବ ନିଃସ୍ୱ—ନିବେଦନ, ପ୍ରୀତି—ଅଭିମାନ ?
ବ୍ରୀଡ଼ାରୀ ସୋହାଗ ? ଯେବେ ଗ୍ରାମ ସ୍ୱରେ ଜୀବନ ସଂଗ୍ରାମ—
ଡାକିବ ପୌରୁଷେ ତବ ଧୂମ ହେବ ସହସ୍ର କଳ୍ପନା—
ଅଭାଜନ ସଙ୍ଗିନୀରେ ନ ଭୁଲିବ ? ହେବନାହିଁ ବଣା ?
ଡାକିବ ଆଦର କଣ୍ଠେ ଶୁଷ୍କ ହେବେ ପ୍ରାଣ-ଧାରା ? ହାୟ ।—
ବିଦାୟ ବାସର-ଗୃହ ! ବନ୍ଧୁ ମୋର, ବିଦାୟ···ବିଦାୟ !···

—୨—

"ଭୁଲି ଯିବ ? ଭୁଲି ଯିବ ?" ଟାଣି ଦେଇ କିଞ୍ଚିତ ଉତ୍ତରୀୟ—
ଉତ୍ତରେ ପ୍ରଣୟୀ ହସି—ରହ, ଦେଖିନିଏଁ ଭଲ କରି
ଚନ୍ଦ୍ରରୁ ଚପୁଡ଼ ସୁଧା ଝରେ ବେନି ଚତୁର ନୟନ,
ବଧୂଳି ନନ୍ଦିତ ସେନ୍ଥ କମନୀୟ ଅଧର କମ୍ପନ,
ଅନାବୃତ ଶୁଭ୍ର ଗ୍ରୀବା, ତୁଷାରଧବଳ ବାହୁଲତା,
ବନଟେୟ କହୁଛି ଖୋଲି ଖୋଲି ଥରେ ନିମୀଳିତ ପତା !
ରୁଚିର ସର୍ବାଙ୍ଗୁ ତବ ସ୍ଫୁରଇ ଯେ ଆଜି ଅବାରିତ—
ପଥଶ୍ରାନ୍ତ ଏ ପଥିକ ପିଇ ନେଉ ଜୀବନ-ସଙ୍ଗୀତ !
ବାସ୍ତବ ସଂଗ୍ରାମ ଭୟ ? ଛି ! ଛି ! ସେ ଯେ ବାଳ୍ୟ ଚପଳତା ! !
ଏ ଜୀବନ ଯାର ଦାନ ବୁଝିବ ସେ ସଂଗ୍ରାମ ବାରତା ।
ଶ୍ରାନ୍ତ ପାନ୍ଥ-ଜନ-ପ୍ରାଣ କଲେ ଯେବା ମାଧୁର୍ଯ୍ୟମଣ୍ଡିତ,
ଆଜିର ଏ ପ୍ରୀତି-ରସ କରେ ଯାର କରୁଣା ଇଙ୍ଗିତ,
ଏ ପୌରୁଷ କଲେ ଦାବି ପୂର୍ଣ୍ଣ ହେବ ପୀରତି ଆଧାର !
ଆଜିର ମାଧୁର୍ଯ୍ୟ ଲୁଟି ପ୍ରାଣ—ପ୍ରିୟା କର ନମସ୍କାର !

—୩—

ଏ ପଥିକ-ପାନ୍ଥଶାଳା ତୁମରି ଏ ବାସର ଭବନ !
ଅଶେଷ ମାଧୁର୍ଯ୍ୟ ଭରା ଯେହ୍ନେ ସ୍ୱର୍ଗ-ଜୀବନ୍ତ-ସ୍ୱପନ !
ଅଥବା ସାଗର ପାରେ ମୁଗ୍ଧ କବି ରଚ—କଳ୍ପଲୋକ !
ତୁମେ ଅଧିଷ୍ଠାତ୍ରୀ ଦେବୀ ! ଭୁଲିଯାଏଁ ନିର୍ଯ୍ୟାତନ ଶୋକ ।
ନିରେଖିଲେ ସେ ଆନନ, ସ୍ୱେଦବିନ୍ଦୁ ଯହିଁ ପଡ଼େ ଖସି,
ମଳନ ସୁନ୍ଦର କ୍ଷଣେ ତବ ସ୍ପର୍ଶେ ଚପଳ ଉର୍ବଶୀ !

କି ଭୟ ଭାବନା ମୋର ? ଲଘୁ ପ୍ରାଣେ ସଂଗ୍ରାମର ଜାଳ ।
ସକଳ କଳଙ୍କ ଧୌତ କରିବ ଗୋ ସେ ଅଙ୍ଗୁଳି ଧୂଳି,
ପୋଛିବ ବେଦନା ଅଶ୍ରୁ ପ୍ରଦୀପ ଗୋ ଜାଳିବ ଅନ୍ଧାରେ,
ତୁମର ଆଶ୍ୱାସ ଲଭି ବାନ୍ଧବ ଆକୁଳ ପାରିବାରେ
କ୍ଷୁଦ୍ର ମୋ ତରଣୀ ଗୋଟି ! ପ୍ରୀତି-ହାସ୍ୟେ ପଥ ଆଲୋକିତ ।
ତୁମ କଣ୍ଠେ ମିଶାଇ ମୁଁ ଗାଇବି ଗୋ ବିଜୟ ସଙ୍ଗୀତ ।
ଫେରିବି ସୈନିକ ଅବା, କ୍ଷୁଣ୍ଣ ପରାହତ, ବ୍ୟର୍ଥ କାମ,
ବାସର ଭବନେ ନିକି ରାତି ଲାଗି ନ ଦେବି ବିଶ୍ରାମ ?”

—୪—

“ଜାଣିଛୁ ପଥିକବନ୍ଧୁ ! ହେ ଅଜ୍ଞାତ ଦୂରଦେଶ ପାନ୍ଥ !
ଚାଲିବା ଅଗମ୍ୟ ପଥ ତୁମର ଚିତ୍ତ ଅବିଶ୍ରାନ୍ତ ।
ନ ଜାଣେ ମାତର କେମ୍ପା ଶୁଣି ତବ ଦୂର ବଂଶୀଧ୍ୱନି,
ତୁମର ଆହ୍ୱାନ କିବା ଲଗାଇଲା ପ୍ରାଣେ ଉଚ୍ଚାଟନ,
ନିସ୍ତବ୍ଧ ମାଧବୀ ଜ୍ୟୋସ୍ନା କୁହୁ ତାନ ପରଶେ ମଧୁର,
ବନ୍ଦୀ କଲା ମନ ପ୍ରାଣ ତୁମ ମୁଗଧା ବାଳିକା ବଧୂର,
ସେଦିନୁ ଆରମ୍ଭ ହେଲା ଅନଭିଜ୍ଞା ଦୀନା ବାଳିକାର,
ଲାଜ ନିବନ୍ଧନ ଭୁଲି ନିର୍ଜନ ନିଶୀଥ ଅଭିସାର ।
ସେ ଦିନୁ ବାସର-ଗୃହ ଗନ୍ଧେ ପୁଷ୍ପେ କରି ସୁସଜ୍ଜିତ,
ଚାହିଁଛି ବାସକ-ସଜ୍ଜା ତୁମ ପଥ ଉନ୍ନିଦ୍ର-ନିଶୀଥ ।
ଆସିଲ ତ ଆଜି ! ଧନ୍ୟ ତୁମ ବଧୂ ! ଚପଳ ଦେବତା—
ନ ରହିବ ? ନୋହୁ ପଛେ !
ବୃଥା ପ୍ରାଣେ ଦେବି ନାହିଁ ବ୍ୟଥା ।

ଜୀବନ ଅମୃତ ଲଗ୍ନ ବାନ୍ଧିବାର ବିଫଳ ପ୍ରୟାସ—
ନିରେଖି ତୁମରି ବଧୂ ଆପଣାକୁ କରେ ଉପହାସ ।
ମୁକ୍ତ ଦ୍ୱାର ତୁମଲାଗି ! ଜୀବନ "ସୁଦୂର ସ୍ମୃତି"···ବିଦାୟ !
ବିଦାୟ ବାସର-ଗୃହ ! ବନ୍ଧୁ, ପ୍ରିୟ, ବିଦାୟ ବିଦାୟ !

—୪—

ଅଗୁରୁ-ଚନ୍ଦନ ଗନ୍ଧ ମନ୍ଦ ସମୀରଣେ ଯାଏ ମିଶି,
ବାସରୁ ଉତ୍ସବ ଶେଷ ! ପାହି ଆସେ ପ୍ରୀତି-ଶୁଭ୍ର-ନିଶି !
ପ୍ରଣୟୀ ଗଗନେ ବାଜେ ଦୂରପଥ କରୁଣ ଆହ୍ୱାନ,
ଧୂପଶିଖା ସମ ତାର ପ୍ରାଣୁ ସ୍ଫୁରେ ଗାନ ! ······

"ବାସର ଭବନ ବିଦାୟ ପ୍ରଣତି ଘେନ !
ମଳିନ ହସିଲା ଉତ୍ସବ ଦୀପ ହେମ !
କଣଳୟ ଶେଯେ ନୟନ ମୁଦିଛି ବଧୂ,
ଅସ୍ତଚନ୍ଦ୍ର ଡାକ କହେ "ଗଲ ବନ୍ଧୁ !"

ବକୁଳ ମଲ୍ଲୀ କେତକୀ କୁସୁମ ଦାମ,
କେତେ ଅଯତ୍ନେ ଧୂଳିରେ ବିଶଇ ମ୍ଳାନ,
ସମୀ ବନ୍ଦୁ ଛୁଇଁନ ନୟନ ପତା,
ସୁଦୂର ଅଜାତେ ବଧୂର ସ୍ମୃତିର ବ୍ୟଥା !

ଉଠ ନବ ବଧୂ ଉଷା ସମୀରଣ ଡାକେ,
ଡାକେ ଖଞ୍ଜନ ସୁଦୂର ମୁକୁଳ ଶାଖେ,
ମୁଗ୍‌ଧ ନୟନେ ଗୃହ୍ଣି ରହେ ମରବତା
ସବୁ ଆନନ୍ଦେ ବାଜେ କିବା ବ୍ୟର୍ଥତା !

ଶୂନ୍ୟ ଜୀବନ ପୁଳକୁ ପୁଣି କେ ଡାକେ ?
ବଧୂର ସଜନୀ ଯେସନେ ଚକ୍ରବାକେ !
କରୁଣେ ଡାକଇ ଦୂରପଥ ଅବିରଳ,
ସକଳ ତେଆଗି ଦୂର ପରବାସୀ ଚଳ ।

"ଉଠ ବଧୂ ବୋଲି ଡାକିବ କି ଆଉ ଥରେ ?
ମଳିନ ପ୍ରଦୀପ ସମାନ ମରମେ ମରେ !
କହିବାର କଥା କଣ୍ଠେ ରହଇ ଲାଗି,
ଆପଣାର ଛୁଇଁ ଶିଥିଳ ପୀରତି-ରାଗି !

ନିମୀଳିତ ଆଖି, ସୁପ୍ତ କୁଶଳେ ବଧୂ,
ନ ଜାଣଇ କେବେ ଫେରିବ ଏ ଭ୍ରମ ବଁଧୂ,
ଫେରିଲେ ଥିବକି ଅଧରେ ହାସ୍ୟ ହେମ ?
"ବାସର ଭବନ ବିଦାୟ ପ୍ରଣତି ପ୍ରେମ ।"

[ ୧୯୩୪ ]

# ପଥଛାୟା—

—୧—

ମୁଁ ଚିର ପଥିକ, ଯାତ୍ରୀ···ଏ ମରତେ ଦୂର ପରବାସୀ
ଜୀବନର ଅର୍ଦ୍ଧପଥ କେତେ କଥା ମନେ ପଡ଼େ ଆସି !
ଅତୀତ ସହସ୍ର ସ୍ମୃତି ଲୁପ୍ତ, ଅର୍ଦ୍ଧ ଲୁପ୍ତ, ଜାଗରିତ,
ରଜନୀର ଶେଷ ଯାମେ ଶାନ୍ତ ନଭେ-ତାରକା-ଇଙ୍ଗିତ !
ପଥପାର୍ଶ୍ୱେ ଯେତେ ତରୁ ଏ ଯାତ୍ରୀରେ କଲେ ଛାୟା ଦାନ
ଅଛନ୍ତି କି ସଜୀବ ମନେ ? ନାହିଁ, ସର୍ବେ ମ୍ରିୟମାଣ ।
ସୁବିପୁଳ କାଳଗର୍ଭେ ସ୍ମୃତି ମାତ୍ର ଏ ଯାତ୍ରୀର ସାର,
ସକଳ ଆଶ୍ରୟ ! ଘେନ ଏ ପାନ୍ଥର ଭକ୍ତି ନମସ୍କାର !
ସକଳ ବିସ୍ମୃତି ମଧ୍ୟେ ଜାଗ୍ରତ ଏକଇ ବନସ୍ପତି,
କୋଟି ପ୍ରିୟତମଣୀୟ ମଧ୍ୟେ ଯେହ୍ନେ ସେ ମୋ ଅମୃତ ସମ୍ପତ୍ତି !
ପ୍ରୀତି ନେତ୍ର ଛାୟା ସମ ସ୍ୱପ୍ନମାଧୁର୍ଯ୍ୟରେ ସୁଶୀତଳ,
ଯା ସ୍ମୃତି ସମ୍ପାଦେ ଶୂନ୍ୟ ପଥେ ଯାତ୍ରୀ ନୟନର ଜଳ !
ଅନନ୍ତ ମାଧୁର୍ଯ୍ୟରସେ ସତ୍ତ୍ୱ ଯହିଁ ହେଲା ଅନୁଭବ,
ଦିବ୍ୟ ବନସ୍ପତି ସ୍ମୃତି ! ଏ ପାନ୍ଥର ପରମ ଗୌରବ !

[୧୯୩୪]

## —ଆଠ—

### ପାନ୍ଥଶାଳା—

—୧—

ଲକ୍ଷ କୋଟି ପାନ୍ଥଶାଳା !···ଅର୍ଦ୍ଧ-ରାତ୍ରି ଗ୍ରୀଷ୍ମପଥ ସମ
କ୍ଷୁଧା ତୃଷା ହରି ଆହା ପୁଷ୍ଟ କଲେ ଏ ଜୀବନ ମମ ।
ନାହିଁ ନାହିଁ ମନେ ଆଜ କାହିଁ କେତେ ପୁହାଇଛୁ ରାତି,
ଲଭିଛୁ ଜନନୀ-ସ୍ନେହ ଦୂରପଥ-ଆତ୍ମଭୋଳା-ଯାତ୍ରୀ !
ସକଳ ସ୍ମରଣେ ଆଜ ଶୁଷ୍କ ନେତ୍ରେ ଅଶ୍ରୁ ହୁଏ ଜମା,
ଶତ-ପ୍ରୀତି-ଆଶ୍ରା ମମ ! କ୍ଷିପ୍ତ ଏ ପଥିକେ କର କ୍ଷମା !
ଏ ଯାତ୍ରୀର ଆତ୍ମସତ୍ତ୍ୱ ତବ ପ୍ରୀତି-ସ୍ମୃତି-ଇତିହାସ,
ବିସ୍ମୃତ ଯେସନେ ସତ୍ୟ ମାତ୍ର ନିତ୍ୟ ପରମ ପ୍ରକାଶ ।
ଘର୍ଘ ଶୂନ୍ୟ ଏଷ୍ୱ ପଥେ ହୋଇଯାଏ ଆହା କେତେ ଭୁଲ,
କ୍ଷୁଦ୍ର ଏକ ପାନ୍ଥଶାଳା ମାତ୍ର ନିଃସ୍ୱ ସମ୍ପତ୍ତି ଅତୁଳ !
ଦୂରେ, ଦୂରେ ! ଯାର ଆଶ୍ରା ଲଭି ସତ୍ତ୍ୱ ହେଲି ମୋ ପାଶୋର—
ବିସ୍ମୃତ ମୋ ଯାତ୍ରାପଥ, ଚନ୍ଦ୍ରେ ଯଥା ନିରେଖି ଚକୋର !
ଅମୂଲ୍ୟ ସମ୍ପଦ ପ୍ରୀତି ନେଲି କେବା ଅପହୃତ କରି,
ଆଜଯାଏ ଖୋଜେଁ ତାକୁ ଝୁରି ହୁଏଁ ସେ ଆଶ୍ରୟ ସ୍ମରି !

—୧—

ଦୂରେ ସେହି ପାନ୍ଥଶାଳା ! ସହଯାତ୍ରୀ ଅଛ ତାକୁ ଦେଖି ?
ସକଳ ମାଧୁର୍ଯ୍ୟ ଖଣି ଶୋଭା ତାର ନୁହେଁ କାହିଁ ଲେଖି !
ନନ୍ଦନ ସୁରଭି ସେବା, ଉପବନ କୌମୁଦୀ ପ୍ଲାବିତ,
ସ୍ପର୍ଶେ ପଡ଼େ ନାହିଁ ଧରା ଚିତ୍ତ ଖାଲି କରେ ପୁଲକିତ !
ଶ୍ରାନ୍ତ କ୍ଲାନ୍ତ ପାନ୍ଥ ଯେତେ ଭିକ୍ଷା କଲେ ରଜନୀ ଆଶ୍ରୟ,
ଧନ୍ୟ ହେଲେ, ହେଲେ ପୂତ ଲଭି ସେ ଜନନୀ ବରାଭୟ ।
ଅମୃତ ଆଶ୍ରୟ ସ୍ମୃତି ! ଶୂନ୍ୟ ମମ ଜୀବନ ସମୃଦ୍ଧି !
ସ୍ମୃତିରେ ସରଳ ପଥ ବସିଲେକ ଥରେ ନେତ୍ର ବୁଜି ।
ଏଡ଼ି ନ ପାରଇ ବନ୍ଧୁ, ଦୂର ଶୂନ୍ୟ ପଥଯାତ୍ରା ନିଶା,
ସୁଦୂର ଆହ୍ୱାନେ ଜାଗେ ଭଗ୍ନ ପ୍ରାଣେ ଅଦମ୍ୟ ଜିଗୀଷା,
ବାହାର ପଡ଼ଇଁ ଘରୁ ! କ୍ଷଣକ ନ ଗଣି ଯାତ୍ରା କ୍ଲେଶ,
କହିବ କେ ସହଯାତ୍ରୀ ଏ ଯାତ୍ରାର କାହିଁ ହେବ ଶେଷ ?
ସଜଳ ମୋ ଅନୁଭୂତି ବ୍ୟଥା ସିକ୍ତ ସ୍ମୃତି ଅନ୍ଧକାରେ,
ଦୂର-ପାନ୍ଥ-ଶାଳା-ସ୍ମୃତି କୌମୁଦୀ-ପ୍ଲାବନ ପାରାବାରେ !

---

## —ନଅ—

### *ବ୍ୟେଟ୍ରିଶ—

—୧—

ରୂପଚଳେ କିବା ସତ୍ୟ ରଖିଛ ଲୁଚାଇ,
ନ ସରେ ରୂପସୀ ହବା ନଶି ଗୀତେ ଗାଇ;
ପ୍ରଶାନ୍ତ ଶାରଦ ତାରା ସେ ରୂପ ପ୍ରତିଭା,
ମଙ୍ଗଳର ଆଦରଣ ବନ୍ଧୁଆଣେ କିବା !

—୨—

ଧନ୍ୟ ସେ ରଖିଛୁ ରୂପ ପ୍ରୀତି ମାଦକତା,
ଲଭିଛୁ ସେ ରୂପାଲୋକେ ଜୀବନର ସତ୍ତା !
ନୟନ ଅରୁଣାଲୋକେ ମରିଛୁ ଯେ ଥରେ,
ଧନ୍ୟ ସେ ବାନ୍ଧିଛୁ ପ୍ରୀତି କ୍ଷତ ମରମରେ !

—୩—

ଥରେ ହେଲେ ଚିଦାକାଶେ ରୂପରୁ ପ୍ରପାତ !
କୌମୁଦୀ ପ୍ଲାବନ କେବେ ଅରୁଣ-ପ୍ରଭାତ !
ଶୂନ୍ୟ ପ୍ରାଣ ବିପିନରେ ମୁରଲୀ ନିନାଦ,
ସତ୍ତା ଯାଏ ହଜି କାହିଁ ଲୟ ଅବସାଦ !

—୪—

କି ମାୟା ଏ ଦୀନପ୍ରାଣେ ରଚିଲ ରୂପସୀ !
କି ଅମୃତ ଢାଳିଦେଲ ମୋ ବଳ ନ କଷି,

* ଇଟାଲୀୟ କବି ଦାନ୍ତେଙ୍କର ପ୍ରଣୟିନୀ ।

ଯାଙ୍କେ କାର୍ଣ୍ଣ ସମ୍ପାଦିବ ପରମ ସମ୍ପଦ,
ନତ୍ୟ ପ୍ରାଣାରାମ କାବ୍ୟ-ଅମୃତ ସୁଖଦ !

—୫—

ରୂପର ଗୌରବ ଅବା ଗାଇଯିବ ଗୀତେ ?
ଅମୃତ ଆସ୍ୱାଦ ଆହା ରଖିଗଲ ଚିତ୍ତେ !
ରଖିଯିବ ଚନ୍ଦ-ବର୍ଣ୍ଣେ ? ଉପହାସ କଥା !
କେ ବୁଝିଇ କବି-ଶିଳ୍ପୀ-ଅନ୍ତର ଧାନତା ?

—୬—

ରୂପ ଆଦରଣ ପାଶେ ମରେ ଲଜ୍ଜେ ବାଣୀ,
ମରଣକୁ ଧନ୍ୟକରେ ସ୍ନିଗ୍ଧ ସେ ଗୃହାଣୀ !
ଚିରନ୍ତ-ଶରଣ-ପଦକର ମାଦକତା,
ଅରଜନ ବଶ୍ୟକଳା ଭୁଲା ସାର୍ଥକତା ।

—୭—

ଖେଳ ଲେଳ ନୟନର ମାଧୁର୍ଯ୍ୟ ପ୍ରକାଶ
ସୃଷ୍ଟିର ଅନାଦି ଉତ୍ସ ଲୀଳା-ଚନ୍ଦ୍ର ହାସ;
ଅତୃପ୍ତ ପରାଣେ ଲୁହିଁ ଗୃହିଁ ଦିବାନିଶି
ଯାଙ୍କେ ପ୍ରୀତି ନେହାଲ୍ଲେକେ ଯାଆନ୍ତୁ ମୁଁ ମିଶି !

—୮—

ହେ ଅରୂପ ରୂପ୍ୟାବାଳ ପର୍ଣ୍ଣ ଯାଅ ଚଳ,
ଚରଣ କମଳ ଯେଉଁ ପଥଯାଏ ଦଳ,
ସେ ପଥେ ଫୁଟନ୍ତ ହେଲେ କ୍ଷୁଦ୍ର ଘାସଫୁଲ !
ଅମୃତ ସମ୍ପତ୍ତି ସେ ମୋ ସ୍ୱପନ ଅତୁଳ !

—୯—

ହସିବେ ଜଗତେ କଣ୍ଟ ରୂପ ଢଳାଢଳ,
ପ୍ରୀତି-କ୍ଷୀଣଜୀବୀ-ମତ୍ସ୍ୟ-ବଣ୍ଡଶୀ-କବଳ !
ସାର କରି ଜୀବନରେ କଳଙ୍କ ପସରା,
ଦୂରୁଁ ଦୂରେ ଅପସରେଁ ଦିଏ ନାହିଁ ଧରା !

—୧୦—

ଦୂରେ ଦୂରେ ବହୁଦୂରେ ଥାଅ ରୂପରାଣି !
ଦରିଦ୍ର ପୂଜାରୀ-ସତ୍ତ୍ୱ ନ ପାର ଗୋ ଜାଣି
ଦବା ନାହିଁ ପୂଜା ଅର୍ଘ୍ୟ ପ୍ରୀତି ଅଶ୍ରୁଜଳ,
ଜୀବନ ନନ୍ଦନ ହେଉ ନିତ୍ୟ ମୋ ସମ୍ବଳ !

—୧୧—

ଧନ୍ୟ ହେଉ ଏ ଜୀବନ ସେ ସ୍ମୃତି ସୌରଭେ,
ଆଶ୍ରୟ ତୁମେ ଜୀବନ-ଝଡ଼-ଉପଦ୍ରବେ,
ସେ ରୂପେ ଜୀବନ ସତ୍ୟ ସୁନ୍ଦର ସରଳ,
ସୁନା ହୁଏ ଅଲକ୍ଷିତେ ଜୀବନ ଗରଳ !

—୧୧—

ଜୀବନେ ଯା ସ୍ମରଣୀୟ ମରଣେ ପୂର୍ଣ୍ଣତା—,
ପରାଣ ପୀଡ଼ଇ କାହିଁ ବ୍ୟବଧାନ ବ୍ୟଥା ?
ରୂପ କଷଟିରେ ପ୍ରାଣ ପରଖିଲେ ଥରେ !
ଅମୃତର ମାଦକତା ସ୍ଫୁରେ ମରମରେ !

—୧୩—

ଅନଳେ ସ୍ଫୁରଇ ଚେଣ୍ଡୁ ସୁରଭି ନିଃଶ୍ୱାସ
ବସନ୍ତ ସନ୍ଧ୍ୟାରେ ନେହ-ମନ୍ଦିର-ପ୍ରକାଶ
ଶାରଦ ଶେଫାଳି ତଳେ ଚରଣ ଶିଞ୍ଜିତ
ରୂପସୃଷ୍ଟି ଗାଏ ତବ ଅନାମୟ ଗୀତ ।

—୧୪—

ଏ ସୃଷ୍ଟି ପ୍ରଚ୍ଛନ୍ନ ସତ୍ୟ ଏକରୂପ ଶିଖା
ଶିଖାଇ ସରଳ କରେ ଶତ ପ୍ରହେଳିକା;
ସସୀମ ସେ ରୂପ ତବ ଆଗୋ ରୂପରାଣୀ !
ବହ୍ନି ଦଶେ କି ବଚନ ଅସୀମର ବାଣୀ ।

—୧୫—

ରୂପ ପ୍ରୀତି ଜୀବନର ପରମ-ଗୌରବ,
ଜୀବନ ମରୁରେ ରଚେ ନିତ୍ୟ ମହୋତ୍ସବ !
ବ୍ୟବଧାନେ ଲୁପ୍ତ ହୁଏ ଦେଶ କାଳ ସୀମା
ଶିଖାଇ ଗୋ ଧନ୍ୟ କଲ ପୀରତି ମହିମା ।

—୧୬—

ଦୂରେ ଦୂରେ ଥାଅ ପଛେ ନବ ବଳାହକ
ସ୍ପର୍ଶି ଚିର ତୃପ୍ତ ରୂପ ପିପାସୁ ଚାତକ ।
ରୂପ ଅଭିମାନ ପ୍ରାଣେ ଚେତିଲେ (୧) ଅବଜ୍ଞା
ନ ଭୁଲିବ ରୂପସୀ ଗୋ ଧ୍ୟାନ କର ପ୍ରଜ୍ଞା—

—୧୭—

"ଏ ସୃଷ୍ଟି ମଙ୍ଗଳ ଲାଗି ରୂପ ଅଭିସାର
ଅଭିମାନେ ଅଗ୍ନି ଦାହ ନିତ୍ୟ ବ୍ୟଭିଚାର !
ସେ ସମ୍ପଦ ନ ଦହିବ ଅନ୍ଧ-ମୋହ ପ୍ରାୟ !"
ଏ ଜୀବନ ଲାଗି ପ୍ରିୟ ନେଉଛି ବିଦାୟ ।

---

(୧) ଚେତିଲେ—ଉତ୍ତେଜିତ କଲେ, ଜାଗିଲେ । ଅର୍ଥାତ୍ ତୁମ ପ୍ରାଣରେ ଯେବେ କୌଣସି କାଳରେ ରୂପର ଅଭିମାନ ହେତୁ ଅହଙ୍କାର, ଅସୂୟା, ଅବଜ୍ଞା ଉତ୍ତେଜିତ ହୁଏ, ତେବେ ଏ ଧ୍ୟାନ କରିବ ନିମ୍ନଲିଖିତ ପ୍ରଜ୍ଞା ବା ତତ୍ତ୍ୱ ଭୁଲିବ ନାହିଁ ।

—ରଚୟିତା—

## — ଦଶ —

### *କିସ୍‌ସା ଗୌତମୀ —

କହିଲେ କିସ୍‌ସା ଗୌତମୀ, "ପ୍ରଭୁ ! ଭ୍ରମିଲି ଲକ୍ଷ ଘର,
ମୁଠାଏ ତ ଦୂର, ସର୍ଷପ ଏକ ନୁହେଁ ସମ୍ଭବପର ।
ଯେତେ ଯହିଁ ଗଲି ଅଶ୍ରୁର ଲୀଳା, ମୃତ୍ୟୁ ଅଟ୍ଟହାସ,
ଚୂର୍ଣ୍ଣ କଲା ମୋ କ୍ଷୁଣ୍ଣ ଚରଣ ପ୍ରସ୍ତର କଲି ଗ୍ରାସ ।
ଦେଖିଛି ସଦ୍ୟ-ସନ୍ତାନ-ହରା ନୟନୁଁ ଶୁଷ୍କ ନୀର
ଚିତ୍ରପ୍ରତିମା ସମାନ ଅଚଳ ! ସ୍ତନୁ ବହିଯାଏ କ୍ଷୀର !
ଖାଇବାର ଶିଶୁ ଶମଶାନ ପୁରୁ ବାହୁଡ଼ି ନ ଆସେ ଭୁଲି,
ଲହୁ ଧାର ପରି ବକ୍ଷେ କ୍ଷୀର ଧାର ଉଚ୍ଛ୍ୱାସେ ଖାଏ ଧୂଳି ।

---

*ବୌଦ୍ଧ ଜାତକରୁ ସଂଗୃହୀତ । ପୁତ୍ରହରା-ବଧୂର ଗୌତମୀ ବୁଦ୍ଧଙ୍କ ସମ୍ମୁଖରେ ପୁତ୍ରର ଜୀବନ ଭିକ୍ଷା କରିବା ଓ ତଥାଗତ ତାଙ୍କୁ ମୃତ୍ୟୁରହିତ ପରିବାରରୁ ସର୍ଷପ ସଂଗ୍ରହ କରିବା କଥା ସମସ୍ତଙ୍କର ସୁବିଦିତ । କିସ୍‌ସା (ପାଲି) = କୃଶା ବା କୃଷ୍ଣା (ସଂ) ।

—ରଚୟିତା

## କୃଷା ଗୌତମୀ

ସଦ୍ୟ ବୟସ ଷୋଡ଼ଶୀ ତରୁଣୀ ବର୍ଷେ ହୋଇନ ବିଗ,
ଉତ୍ସବ ବାଜା ନିଭିଛି କି ନାହିଁ ବାଡ଼ରେ ରବିଲ ଶିବା ।
ନିଭି ନ ଥିଲ ତା ଚିର-ସିନ୍ଦୂର ନୟନୁ କଜଳ ଗାର,
ଗଗନ ଭୂଧର ଭାଙ୍ଗି ପଡ଼ୁଥିଲା ଶୁଣି ତା'ର ହାହାକାର ।
ଅଶୀତି ବର୍ଷ ବୃଦ୍ଧା ଯୁଗଳ ନୟନକୁ ଝଟେ ନାହିଁ.
ଛାଡ଼ିଯାଇଥିଲେ ଏକ ପରେ ଆନ ଭର୍ତ୍ତା ପିଅର ଭାଇ ।
ଥିଲ ତା ମାତ୍ର ସମ୍ବଳ ଏକ ସାତୁ ପରି ଯୁବା ପୁଅ.
ଅଜ୍ଞାତେ କେ ଏବେ ଭସାଇ ନେଇଛି ଅକାଳ ମରଣ ସୁଅ ।
ଅଣ୍ଟାନି ହୁଏ କାହିଁ ଗଲା ତାର ଅନ୍ଧ ଲଉଡ଼ି ଯଗ,
କାହିଁ ତା ପୁତ୍ର ? ପଥର ଯଷ୍ଟି ? କେହି ଦିଏ ନାହିଁ ଧରା ।
କାହାର ସାତେ ଟି ସନ୍ତାନ ସବୁ ଗଲେ ଏକ ଏକ କରି
କୋଡ଼େ ବସି ଶିର, ଫାଟୁଛି ତା ବୁକୁ ଗର୍ଭ ବେଦନା ସ୍ମରି ।
ଭର୍ତ୍ତା ତାହାର ପ୍ରବୋଧଇ ବସି, 'ଭାଗ୍ୟେ ଯା ଥିଲ ହେଲ ।'
"ଭୁଲିଯାଅ ସଖି ! ଧିକ୍ ବିଧାତା ! କାହିଁକି ଜନ୍ମ ଦେଲ ?"
ପୁଣି ପୁରାତନ— ଅନୁରାଗ ପ୍ରୀତି ସଞ୍ଚାରୁ କରେ ବସି,
ମୃତ-ସନ୍ତାନ-ବିରହ-ଜନମ-ବେଦନା ପଡ଼ଇ ଖସି ।
ରୁହିଁ ସେ ଦେଖଇ ଯୌବନ-ରସ-ପାତ୍ର ହୋଇନ ଶେଷ
ନଗାଡ଼ି ପିଇବ ବୋଲି ଧରେ ଅବା ନଭିବ ଯାତନା କ୍ଲେଶ
କେ ପୁଣି ତରୁଣୀ ପ୍ରଥମ ଗର୍ଭ ହରାଇଗଲାଣି ଭୁଲି,
ଅଧର-ନୟନ-ରଞ୍ଜନ-ଆଶେ ଅନୁରାଗେ ଧରେ ତୂଳି !
ଦୃଷ୍ଟିପୁର ଲାଗି ପୂଜା-ଆରାଧନା-ମନ୍ତ୍ର-ଅଭିସାର !
ନବଯୌବନ-ଛନ୍ଦ-ରଭସେ ବିସ୍ମୃତ ହାହାକାର ।୩୦।

ବିରଚନ୍ତି କେଶ, ଲଗି ହୁଏ ପୁଣି କସ୍ତୁରୀ ଗୋରଚନା,
ପୁଚ୍ଛନ୍ତି ଉତ୍ସୁକେ ସନ୍ତାନ କଥା, କ୍ଷଣେ ହେଲା ବାକ୍‌ବନ୍ଦା !
ଦର୍ପେ ଶୁଣି ଆପେ କହିଲ, "ଭଗିନି ! ଆମର ଭାଗ୍ୟଦୋଷ,
ନୁହେ ଯା ଆମର କେବା ହେବ କର ତାହା ଲଗି ଅବଶୋଷ ?
ଛଅମାସ କାଳ ତା ପିଅର ମୁଖେ ଦେଲେ ନାହିଁ ପାଣି ଅନ୍ନ,
କଳା କାଠ ପରି ମଳିନ ଦିଶିଲା ସ୍ୱର୍ଣ୍ଣ ସମାନ ବର୍ଣ୍ଣ !
କଏ ବା ଶୁଣିଲା, ପାଗଳ ପରାଏ ଆହା ଯେତେ ହେଲେ ଝୁରି ?
କହିଲ ବୁଝାଇ, "ଭାଗ୍ୟରେ ଥିଲେ କଲ ଦର ପିବ ପୁରି !"
ଦେଖିଲ ଏସନ ଘର ଘର ବୁଲି କେତେ ଗୁପ୍ତାବାଜି-ଖେଳ !
କାନ୍ଦିବା ହୃଦୟ ସ୍ତବ୍ଧ କାତର କାନ୍ଦିବା ଶବ୍ଦ ଶେଳ ।
ମଦ୍ୟପ ସମ ମୃତ୍ୟୁକୁ ଭୁଲି କେବା ହସିଖେଳି ଗାଏ !
ଯୌବନ-ମଦେ-କ୍ଷଣିକ-ମତ୍ତ-ବନ୍ଧୁଏ-ଆଖି ଲୁହେଁ !
ଲୁଡ଼ଗଲେ ନିଶା ବଳକେ କାନ୍ଦେ ଅସହାୟ ଶିଶୁ ସମ
ଏହି ତ ଜୀବନ ! ଶିବ ଆନନ୍ଦ ? ଏଥି ଅମୃତ ଭ୍ରମ !
ସହିହେବ ଶତ ସନ୍ତାନ-ଶୋକ, ରହିବଟି ରହିବ ପ୍ରାଣ,
ସକଳ ଶୋକରୁ ବଳି ଅସହ୍ୟ ଆତ୍ମାର ଅପମାନ !
ଲୋଡ଼ା ନାହିଁ ହୃଦ ସନ୍ତାନ ପ୍ରଭୁ-ମୋ ଭଳି ଛନ୍ତି ଶତ !
ଆତ୍ମାପମାନ-ଅଜ୍ଞାନ- ତମ୍ଭ କଡ଼ାଇ ନିଅ ହେ ପଥ ।
ଲୋଡ଼ା ନାହିଁ ମୋର 'ସୁନ୍ଦର ଚକୁର, ନୟନ ଦୀପ୍ତି-ଛଟା,
ଖାବୁ ଏ ରୂପ ଅନଳରେ ପୋଡ଼ି ହୁଏଁ ଆପେ ହଟହଟା' ।୫୦।
ଅରୁଣ ଅଧର, ରମ୍ୟ ବକ୍ଷ, ରମଣୀସୁଲଭ ବ୍ରୀଡ଼ା !
ଲୁହିଁ ତା ମୃତ୍ୟୁ କଙ୍କାଳ ହସେ ! କୋଟି କୀଟ କରେ କ୍ରୀଡ଼ା ।

## କସ୍ୱା ଗୌତମୀ

ଦୁର୍ବଳ ଶତରୂପ ମାଧୁର୍ଯ୍ୟ ରମଣୀ-ଗର୍ବ-ଧନ—
ଲୋଡ଼ା ନାହିଁ ପ୍ରଭୁ, ପଥ ଦଅ କହ ! କଲି ପଦେ ଅର୍ପଣ ।

× × × × ×

ମନ୍ଦେ ବିହସି ଉତ୍ତର କଲେ କାରୁଣିକ ତଥାଗତ
ଜାଣି ମୁଁ ଭଗିନୀ ପଠ'ଇଲ ତହିଁ ପାଇବ ଜୀବନ-ପଥ ।
ନୁହେଁ ମୁଁ ଦେବତା, ମାନବ ମ'ଷ ! ରକ୍ତମାଂସ ଦେହ !
ମାନବ ପକ୍ଷେ ସମ୍ଭବ ଯାହା ଲଭିବ ଶାନ୍ତି ସ୍ନେହ ।
ଆବର ଅଙ୍ଗେ ଗୈରିକ ବାସ ଲଭିବ ସ୍ଥବିର ସଙ୍ଗ,
ଦୁର୍ଦ୍ଦିନ ତମେ ବତାଇବ ପଥ ଅବନଶ୍ୱର ସଂଘ ।୭୦।

[୧୯୩୭]

## —ଏଗାର—

ଉମା—

ଛବିଶ ବର୍ଷର ଜନ୍ମ !............
ଛଅଟି ସନ୍ତାନ !
ଦବାଗ୍ନି କୋଳାହଳେ ଶୋଷୁଥାନ୍ତି ପ୍ରାଣ ।
କୋଟରେ ପଶିଛି ନେତ୍ର, ପାଣ୍ଡୁର ବଦନ,
ଶୀର୍ଣ୍ଣକାୟ, ରକ୍ତହୀନ, ଶିଥିଳ ଚରଣ;
କପୋଳର ଅସ୍ଥି ଦନ୍ତପନ୍ତି ଦୁଏ ବାରି,
ମରଣ ଗହ୍ୱରୁ ଅବା ଆସନ୍ତି ବାହାରି ।
ଅର୍ଦ୍ଧେକ ଉପର କେଶ ହେଲାଣି ପଳିତ,
ନର୍ଗିକ ସେ ନାରୀ ! ତେଣୁ ନୁହେଁ ବଚଳିତ ।
ଛଅଟି ଆତ୍ମଜ ରକ୍ତମାଂସ ଯାନ୍ତି ଶୋଷି,
କାହାକୁ ଜଗତେ ହେନେ ନ କରେ ସେ ଦୋଷୀ ।
କୁକୁଟ ଶାବକ ସମ ଉର୍ଦ୍ଧ୍ୱ ଥାନ୍ତି ଘେରି
ଆଜୀବନ ବନ୍ଦୀ ପଦେ ସେ' ବା ଲୁହା ବେଡ଼ି !
ଭୋଜନ ଶୟନ ଲାଗି ନ ଦଅନ୍ତି ତର,
ଘଟେ ଦୁର୍ଘଟଣା ହେଲେ କ୍ଷଣକେ ଅନ୍ତର ।
ଅସ୍ତବ୍ୟସ୍ତ କଲେ କେବେ ସନ୍ତାନ ତାହାର
ଗୋରୁ କୁକ୍କୁରରୁ ବଳ କରଇ ପ୍ରହାର ।

ଝଟକାରନ୍ତି ବାକ୍ୟବାଣ, ଦଶନକାମୁଡ଼ା,
ନିଖୋଦରୁ ଚଢ଼ା ସ୍ୱରେ ଫୁଲେ ନାକ ପୁଡ଼ା ।
କାନ୍ଦିବାକୁ ନେତ୍ରେ ତଳେ ନଥାଏ ଲୋତକ,
ଦଣ୍ଡେ କ୍ଷଣଲାଗି ରୂପ ଯେସନେ ଘାତକ !
ସ୍ୱାମୀ ମସିଜୀବୀ, ମାସେ ବେତନ ଗୃହଜଣ,
ବାକ୍ୟରୂପ ବ୍ୟବହାରେ କଠୋର କୃପଣ !
ଧରେ ନାହିଁ ମନ ତାର ଗୃହେ କଦାଚନ,
ନିତ୍ୟ ନବ ଆନନ୍ଦର କରେ ଆୟୋଜନ ।
କର୍ମଶେଷେ ମଦ୍ୟପାନ ଯାଯାବର ଦୀକ୍ଷା,
ଅର୍ଦ୍ଧରାତ୍ରେ ଫେରି କରେ ସଙ୍ଗୀତ ପରୀକ୍ଷା ।
ଅର୍ଦ୍ଧାଙ୍ଗିନୀ ଧର୍ମପତ୍ନୀ ମୁଖେ ଦିଏ କାଳି
ଦୁର୍ବଳା ରମଣୀ ନିଏ ସକଳ ସମ୍ଭାଳି ।
କଣ୍ଠ ଆଭରଣ ତାର ପ୍ରହାର ଧିକ୍କାର,—
ସେ ଲାଗି ସନ୍ତାନେ ଦିଏ ସେହି ପୁରସ୍କାର ।

× × ×

ଏହି ସେହି ଉମା !·············
ବୟ ଦଶଟି ବରଷ,—
ଶିକ୍ଷା ରୂପ ଗୁଣେ ଯେବା ଥିଲା ଆଦରଣ,
ଦଶଖଣ୍ଡ ଗ୍ରାମେ ଶ୍ରୁତ ଉଚ୍ଚ ପରଶଂସା,
ନିଭୃତିଲା ମରୁଥିଲା ତାରୁଣ୍ୟ ଲାଳସା
ଦରଶନ ମାତ୍ର ଲାଗି ! ସେ ଉମା ଉତ୍ତମା—
ଆପଣା ରୂପର ଏକା ଥିଲା ସେ ଉପମା !

ଏ ସେହି ଚଞ୍ଚଳା ଉମା !·········
                    ଯା ନୟନଭଙ୍ଗୀ—
ଦିନେ ମୁଗ୍ଧ ହେଉଥିଲା କାନନ କୁରଙ୍ଗୀ !
ପ୍ରାଣଭରା ହାସ୍ୟେ ଲାସ୍ୟେ ତା ଗତି ନଟକେ—
ଲେଖନୀ ମୁନରେ କାବ୍ୟ କବିତା ଅଟକେ !
ଗନ୍ଧବହ ଥରୁଥିଲା ଦେହ ଗନ୍ଧେ ତାର,
ତା ଆରଷ୍ଣ ଜଳୁଥିଲା ତାରୁଣ୍ୟ ବିକାର ।
ସେ ଦିନ ନଉଥିଲା ଜବା ଅଧରୁ ରକତ,
କୃତକୃତ୍ୟ କବି, ଶିଳ୍ପୀ, ପ୍ରେମିକ ଭକତ ।
ଏହି ସେହି ଉମା ! ସେହି ସ୍ୱପ୍ନ ମାୟାବିନୀ !
ଆଜି ପ୍ରେତପୁର ଛାୟା ଅଥବା ଡାକିନୀ !
ଥିଲା ଉଚ୍ଚଶିକ୍ଷା ତାର ସମାଜ-ଆଦର୍ଶ,
ବଳିଷ୍ଠ ତା ଦିବା-ସ୍ୱପ୍ନ କଳ୍ପନା ଉଭସ !
କବିତା ରୂପିଣୀ ଚିର କବିତ୍ୱେ ବିହାର,
ପ୍ରାୟଶ୍ଚିତ୍ତ ତା'ର ଆଜି ପ୍ରହାର ଧିକ୍କାର !
ତଥାପି ସେ ସତୀ ! କଳି-ସାବିତ୍ରୀରୂପିଣୀ !
ସଦାଶିବ ପଦେ ନଏ ଦେବତାଙ୍କୁ କିଣି ।
ପୁଚ୍ଛିଲେ ତା ଆଚରଣ, ପୂର୍ବ ସ୍ୱପ୍ନ କଥା,
ଦୀର୍ଘଶ୍ୱାସେ ଢଳକୁ ସେ ଯୋଡ଼ିଦିଏ ମଥା !
ଅବା ଶୁଷ୍କ ହାସେ କହେ—"ଭାଗ୍ୟର ଲିଖନ !"
"ଦେବତାର ଇଚ୍ଛା ହେଉ ଜୀବନେ ପୂରଣ !"
କରାଳ ତା ଦନ୍ତପନ୍ତି ଦେଖି ଲାଗେ ଡର,
ଛବି ଉପହାସ ସେ'ବା ସୃଷ୍ଟି ଆଦର୍ଶର !

[୧୯୪୧]

---

## —ବାର—

### ଉପମା ବିରୋଧ—

ମଳୟ ପ୍ରିୟାର ନିଃଶ୍ୱାସ ବୋଲି
ପଛକୁ ଦେଲି ମୁଁ ଚାହିଁ,
ବକ୍ଷେ ବାଜିଲା ବୈଶାଖ ଶ୍ୱାସ
ଫେରିଲି ଲଜ୍ଜା ପାଇ । ୧ ।
ଚମ୍ପକେ ପ୍ରିୟା ଗୌର କାନ୍ତି,
ବନ୍ଧୁଳି ଅଧର ଶୋଭା,
ଆଦ୍ୟ ନିଶାରେ ମଳିନ ଉସ୍ମ
କାନ୍ତି ମାନସଲୋଭା । ୨ ।
ପ୍ରଥମ ଆସାର ବାଟ,ବାଢ଼ ବନ୍ଧେ
କୃଷ୍ଣ ତା କେଶ ଦାମ,
ବିଦ୍ୟୁତେ ପ୍ରିୟା ଦୃଷ୍ଟି ଛଟକ,
ପରଶେ ଜନମ କାମ । ୩ ।

ବାଧିଳା ଶ୍ୱାଦରେ ପଳିତ କାନ୍ତି !
ଦାମିନୀ ଦୃପ୍ତ ପୀଡ଼ା !
କୁହେଳ ସମାନ ଶୂନ୍ୟ ସଘନ
କଲ କୌତୁକ କ୍ରୀଡ଼ା ।୪।

ଗୋଲାପପ୍ରିୟାର ପୁଣ୍ୟ ମାଧୁରୀ
ଘାଳିଲ କରିଛୁ ସ୍ୱୈର,
ଜଡ଼ିତ ବକ୍ଷେ କଣ୍ଟକ ପୀଡ଼ା !
ନ ସରଇ ଗୁଣ ଘୋର । ୫ ।

କୌମୁଦୀ ଭଳ ମାଧବୀ ନଶି ଚା'
ସ୍ନିଗ୍ଧ ସୁହାଣୀ ପରି !
ସନ୍ଧ୍ୟାରେ ଆଦ୍ୟ-ଅନୁରାଗ-ବ୍ରୀଡ଼ା
ଘାଳି ମୁଁ ଆତ୍ମହରା । ୬ ।

ପଶ୍ଚାତେ ଚାର ଅମାଅନ୍ଧାର !
ମୃତ୍ୟୁ ଅଟ୍ଟହାସ !
ଅବଶ କଲା ମୋ ସବ' ଅଙ୍ଗ
ଜଡ଼ୀଭୂତ ଯେତେ ପ୍ରାସ । ୭ ।

ମଲ୍ଲିକା ଦାମେ ନାହିଁ ପ୍ରିୟା-ହାସ
ମୃତ୍ୟୁ ଦନ୍ତ ଶତ !
ଘାଳିଲି କା ଯେନ ରଚିଲେ କାବ୍ୟ
କହଏ ଇଚ୍ଛା ମତ ? ୮ ।

—ଶାନ୍ତା

କାବଳେ ସ୍ୱକୀୟା ପରକୀୟାଠାରେ
ଉପମାକୁ କଲେ ଶେଷ ?
ମୂର୍ତ୍ତମାନବ ଲଗି ସାଇଛଲେ
ଭ୍ରାନ୍ତ ଯାତନା କ୍ଲେଶ ।୯ ।
ରୁକ୍ଷ ଏ ମରୁ-ବୃନ୍ଦାବନେ
ଉପମାର କାହିଁ ସ୍ଥାନ ?
ଗୋଲୋକରେ ରସ ! କାହିଁ ବା ପ୍ରଣୟ ?
କଠିଣ ଧରିବା ପ୍ରାଣ । ୧୦ ।

× × × ×

ପ୍ରଭାତ ଭ୍ରମଣୁ ଫେରୁଥିଲି ଦିନେ
ସଂସାର-କାରା-ଗେହେ,
କ୍ଷୀଣ କଣ୍ଠେ ଡାକିଲ ଦୁବା
ବ୍ୟଥିତା-ପ୍ରିୟାର ସ୍ନେହେ । ୧୧ ।
ଦେଖିଲି କ୍ଷୁଦ୍ର କୁସୁମେ ଜଡ଼ିତ
ସ୍ନିଗ୍ଧ ଶିଶିର ବିନ୍ଦୁ !
(ମୋର) ସାର୍ଥକ ପ୍ରୀତି-ଉପମା ପିପାସା
ଉଛୁଳେ ଅଶ୍ରୁ-ସିନ୍ଧୁ ।୧୨।
ଦଗ୍ଧ ହୃଦୟେ ଗୋପି ସେ ଅଶ୍ରୁ
ଗର୍ବେ ଉଠିଲି ଗାଇ—
ପଢ଼ିଛି ସେତେ ମୁଁ କାବ୍ୟକବିତା
ଏ ଉପମା କାହିଁ ନାହିଁ । ୧୩।

[୧୯୦୭]

—

—ତେର—

## ମୃତ୍ତିକା ଦର୍ଶନ—

—୧—

ଦୂର ସେ ତଟିନୀ କୂଳେ ଆପଣାର ହାତେ,
ଶୁଆଇ ଆସିଛୁ ବାବୁ ମାଟି ଖୋଳ ଗାତେ ।
ଶିର ଊର୍ଦ୍ଧ୍ୱେ ତାର ମୁକ୍ତ ସୁନୀଳ ଆକାଶ,
ପାର୍ଶ୍ୱେ ସ୍ନିଗ୍ଧ ବନାନୀର ନୀଳିମା ଅବକାଶ ।
ବନ୍ଧୁ ଯାଏ ପଦ ତଳେ କଳ କଳ ନଦୀ,
ଢାଳଇ ଅମୃତ ରସ ତହିଁ ନିରବଧି ।
ପ୍ରପଞ୍ଚ ଯନ୍ତ୍ରଣାଠାରୁ ନୁହେ ସେ କି ଭଲ,
ମୂକ କାଠ ସମ ପଡ଼ି ପ୍ରାଣୀ କଲବଲ ?
ଧୂଳି ଶେଯ, ଭସ୍ମ-ଲେପ, ସ୍ତୃହଣୀସ୍ଥ ତଳ୍ପ,
ସେ ସୁଖ ସ୍ମରଣେ ପୁଲକିତ ବାଞ୍ଛା ଲବ୍ଧ ।

ଶ୍ରାବଣର ବନ୍ୟା ବର୍ଷ ପରେ ଯିବ ବହି,
ଶାନ୍ତ ହେବ ଯେତେ କଥା ହୋଇନାହିଁ କହି
ଶୁଣିବୁରେ ସ୍ରୋତ-ଜଳ ଖଳ ଖଳ ହସ,
ଶେଷ ପରିଣତି ମାଟି ! ମାଟି ଆବରଣ !

—୨—

କାଳରାତ୍ର !.........
ଝରିପଡ଼େ ବୃଷ୍ଟି ଝିପିଝିପି !
ଏସନ ରାତିରେ କାଳ ଗଲା ଛୋଟି ଶିପି !
କ୍ଷୁଦ୍ର ଶିଶୁ ; ନ ଥିଲା ତ ଫିଟି ତା'ର ପାଟି
କେବଳ ଥକଲେ ଊର୍ଦ୍ଧ୍ୱେ ରହିଁଲା ଚରାଟି !
ମାରବେ କଲା ବା ପ୍ରଶ୍ନ ଅନ୍ଧ-ନୟନରେ,
କେ ଶୁଣିଲା ପ୍ରଶ୍ନ ଶତ ? ମଲା ତା' ଗୁପ୍ତରେ ।
କାହିଁକି ଆସିଲା ଏଥି ଦୁଇ ଦିନ ଲାଗି ?
ଜନମ ପିଅର ସ୍ନେହେ କମା ଅନୁରାଗୀ ?
କଷ୍ଟ ତ ହୋଇନ ଭୋଗ ? ନାହିଁ ଅନୁଭୂତ ?
ପଢ଼ୁଛି ଅନନ୍ତ କାଳ ! ସୁବିପୁଳ ପୃଥ୍ୱୀ ।
ନ ଥିଲେ କି ତାହାଲାଗି ମଙ୍ଗଳ-ବିଧାତା ?
ନ ବୁଝିଲେ ଶିଶୁ ହୃଦ କମା ସବଜ୍ଞାତା ?
ମାଟିରୁ ଉଠିଲା କ୍ଷଣେ ସ୍ଥୂଳ ପଦ୍ମ ଘର,
ଦୁଇ ଦିନ ପରେ ପୁଣି ମାଟି ନେଲା ବର ।

—୩—

ପବିତ୍ର ସେ ମାଟି ! ...
ପ୍ରାଣୀ ଲଭଇ ଉଦ୍‌ଭବ;
ପୁନଶ୍ଚ ଲଭଇ ତହିଁ ବିଲୟ ଗୌରବ ।...

ମଧ୍ୟେ ଭଗବାନ, ପ୍ରଭୁ, ମଙ୍ଗଳ କରତା,
ଲକ୍ଷ କୋଟି ଦେବ ଦେବୀ ଜୀବନ ଭରତା,
ଧର୍ମଭୟ, ରାଜଭୟ, ଅମାତ୍ତର ଭୟ,
ଢନକେତେ ଜୀବ-ପ୍ରାଣ କରଇ ଅଥୟ !
ଆସିଲେ ମାଟିର ଡାକ ସବୁ ଯାନ୍ତି ଛୁଟି,
କଳ୍ପନା-ବେଗ ଦଳି ଆସଇ ଚହଟି,
ଅଦ୍ଭୁତ ଗତି କି ବଳ ! ଭଗବାନ ମୂକ !
ଗୋପନେ ମରଇ ପ୍ରାଣେ ପ୍ରାଣୀ ସୁଖ ଦୁଃଖ ।
ସତ୍ୟ ମୃତ୍ୟୁ, କାଳରାତ୍ରି, ଅସ୍ତୀର୍ଣ୍ଣ ଏ ମାଟି,
ତୂଷ୍ଣୀ ଭଗବାନ !—ଥରେ ରୁଷ୍ଟିଲେ ତରାଇ ।

—୪—

ଅଫଳେ କାନ୍ଦଇ ମାତା ଶିରକୋଢ଼ କ୍ଷୋଭ,
ଝରଣା ସମାନ ସ୍ତନୁ କ୍ଷୀର ଯାଏ ବୋହି ।
ଧରି ପରେ ତା ବେତକ୍ ପାଲଟଇ ଲହୁ
ଫାଟିଯାଏ ଛିତା ବକ୍ଷ ମୃତ୍ୟୁ କଥା କହୁଁ !
ହସେ ମାଟି !...
    ତୀବ୍ର ସ୍ୱରେ କମ୍ପଇ ଆକାଶ !
'ଭଗବାନ ! କାନ୍ଦି ଜୀବ ଲଭଇ ଆଶ୍ୱାସ ।
ମୂର୍ଚ୍ଛାନ୍ତ ଜନକ, ପୁଣି ବଦ୍ଧ-ଦୃଷ୍ଟି-ମାତା,
କଏ ତୋର ନେବ ଦୁଃଖ ? କାହିଁ ପରିତ୍ରାତା ?
ମାଟି, ମାଟି, ସବୁ ମାଟି ! ମାଟି ପରିଣତି !
କାଠ ମୁଖେ ଦେଖି ଦେହ ଲଭେ ଅବ୍ୟକ୍ତ !

## ମୃତ୍ତିକା ଦର୍ଶନ

ଅଦୃଷ୍ଟ ପୁରୁଷ କିଏ ?......
ତାଙ୍କୁ ନମସ୍କାର !
ନମସ୍କାର କରି ଶତ ଅଜ୍ଞାନ-ଚକାର
ଦେଖ ଯାଇଁ ଗଲଲଣି ପ୍ରୀତି-ରକ୍ତ-ମାଂସ,
ହସେ ମାଟି ! ଲକ୍ଷ କଣ୍ଠ କରୁଛନ୍ତି ଗ୍ରାସ !

— ୪ —

ଦେବତା ମଙ୍ଗଳମୟ ? କାହାନ୍ତି ଦେବତା ?
କେମନେ ମଙ୍ଗଳମୟ ? ଲଦି ଏତେ ବ୍ୟଥା ?
ହରେ ଯେ ନିଷ୍ଠୁର ନିଃସ୍ୱ-ଜୀବନ-ସଙ୍ଘାଳ,
କେମନେ ମଙ୍ଗଳମୟ ପାରୁ ନାହିଁ ଭଳି ?
ଆଖି ଆଗେ ଲୁଟିଗଲା ଗୃହ ସନ୍ତାନ, *
ମାଟିଘର ଶୋଇଗଲେ ଶତ ଶତ ପ୍ରାଣ;
ଗ୍ରାସ କଲା ମହାମାରୀ ଦୁଷ୍ଟ କାଳ ବ୍ୟାଧି,
ମୂକ ଶିଶୁ ଆଖି ଆଗେ ଲଭିଲା ସମାଧି ।
କେମନେ କହିବି ତସ୍ମୁ ଥାଉଁ ମୁଁ ମଙ୍ଗଳ ?
ଅମୃତ କେମନେ ହେବ ଭୀମ ହଳାହଳ ?
କହିବି ପ୍ରକାରେ ଦେଖି ଅନ୍ୟ ପରକାରେ ?
ଧରୁ ନାହିଁ ଛଟିଲ ବୁଦ୍ଧି ମୋର କଳ୍ପନାରେ ।
ମାଟିରେ ମିଶିଲା ଦେହ, କହିବି ଆକାଶେ ?
କହିବି ମୁଁ ସ୍ୱର୍ଗବାସ ନରକ ନିବାସେ ?

— ୬ —

ଅଖଣ୍ଡ ମୃତ୍ତିକା, ମାଟି, ପରମ ଜନନୀ,
ତା କୋଳୁ ଜନମ ଲଭି ମୁହିଁ ଯେ ସଜନ !

---

* ଟିପ୍ପଣୀ ଦ୍ରଷ୍ଟବ୍ୟ

ତା କୋଳେ ଲଭିଛୁ ଆମ ଅଖଣ୍ଡ ସଂଗ୍ରାମ,
ପରାଜୟେ ମୃତ୍ୟୁ ଜୟେ ପୂରେ ମନସ୍କାମ ।
ଅଗଣିତ ଜୀବ ସୃଷ୍ଟି କରନ୍ତି ଲଢ଼ାଇ,
ଆପଣା ପ୍ରତିଷ୍ଠା ଲାଗି ଆତ୍ମ ସୁଖ ପାଇଁ ।
ଦୁର୍ବଳ ହଟଇ ଯେତୁ ବଳି ନଏ ମାଟି,
ଅପାରଗ ବୋଲି ମୃତ୍ୟୁ ଦିଏ ତାକୁ ଗ୍ରାସି ।
ସସୀମ ମାନବ ଜ୍ଞାନ, ବଦ୍ଧ ତା'ର ଦୃଷ୍ଟି,
ଦୁଃଖେ ଦେଖେ ତାହା ଲାଗି ସ୍ୱର୍ଗେ ଫୁଲ ବୃଷ୍ଟି ।
ଉଦ୍‌ଭଟ କଳ୍ପନା ବ୍ୟାଜେ ଶଠ କରେ ବୋଧ,
ଅଟେ ସେ'ବା ଅଜ୍ଞାନର ଶାବ୍ଦ ପ୍ରତିଶୋଧ !
ଅଙ୍ଗୁର ରହିଛୁ ବୃକ୍ଷେ ଶିବା ଜାଣେ ସ୍ୱାଦ;
ଏସନେ ମାନବ ଭାଳେ ଜ୍ଞାନ ନିର୍ବିବାଦ ।

—୨—

ଆମ୍ଭ ପ୍ରତିଷ୍ଠାକୁ ଶିଶୁ ହେଲା ନାହିଁ କ୍ଷମ,
ଟଳିଲା ମାଟିରେ ! କାହିଁ ହେଲା ଅନୁପମ ?
ଦେଖି ନାହିଁ ଯମ କାହିଁ ଦେହ ଦେଲା ଧରି,
ସଙ୍ଗେ ଥିଲେ କାହିଁ ତାର ଅସଂଖ୍ୟ ପ୍ରହରୀ,
ଆସିଲା ନେବାକୁ ପ୍ରାଣ ସ୍ୱର୍ଗେ ବା ନରକେ,
ଅନ୍ଧ'ଶ ପିତାମାତା ଥିଲେ ତ ଡରକେ !
କେଉଁ ପାଶେ ନେଲା ବାନ୍ଧି ନ ପାରିଲେ ଜାଣି,
କାନ୍ଦୁଛନ୍ତି ପିତା ମାତା ଜନମାଖୀ ପ୍ରାଣୀ ।
କିବା ଜୀବ ଚାଲି ଗଲେ, ମିଥ୍ୟା କାନ୍ଦୁନାଟିଛ ?
ଜନମନ୍ତ୍ର କାନ୍ଦିଲେ କି ଭୁଲିଗଲି [illegible] ?

ବିଭ୍ରମେ ବଢ଼ଇ ଭ୍ରାନ୍ତି ସତ୍ୟେ ପ୍ରାଣାରାମ,
ନଗ୍ନ ସତ୍ୟ ଏକା ପ୍ରାଣ—ବଇକୁଣ୍ଠ-ଧାମ ।
ସତ୍ୟ ମୃତ୍ୟୁ, ସତ୍ୟ ମାଟି, ତହିଁ ଶେଷେ ଲୀନ,
ସତ୍ୟ ପୃହଣୀୟୁ କରୁ ହୃଦୟୁ ବିଦୀର୍ଣ୍ଣ ।

—୮—

ନିଷ୍ଠୁର ପ୍ରକୃତି ଶୁଣେ ନାହିଁ କା'ର କଥା,
ବୃଥା ତୋର କାଳ୍ପନିକ ଦେବତା ମମତା ।
ବିଫଳ ଅଦମ୍ୟ ଆଶା ଅଟଳ ବିଶ୍ୱାସ,
ସବୁରି ପଶ୍ଚାତେ ଦେଖ ମୃତ୍ୟୁ ଉପହାସ !
ବିଫଳ ନିୟତି ଦ୍ୱାରେ ତୀବ୍ର କରାଘାତ,
ସେ କଭୁ ନ କରେ ଭୁଲେ ଥରେ ଶ୍ରୁତିପାତ !
ତା ସଙ୍କେତେ ଚଳେ ମୌନ ନିଷ୍ଠୁର ପ୍ରକୃତି,
ଅଲଙ୍ଘ୍ୟ ବିଧାନ ତାର ! ସାର ଖାଲି ସ୍ମୃତି !
ସକଳ ମିତର ସାର ସେ ମିତ ନିଷ୍ଠୁର,
ମାନବ କଳ୍ପନା ବ୍ୟାଜ ହେଳେ କରେ ଚୂର !
ହରିଛି ସେ ଶିଶୁ ପ୍ରାଣ ତୋ ଅମୂଲ୍ୟଧନ
ଫେରିବ ନାହିଁ ତା ବିଧି କଠୋର ଶାସନ ।
ପୁନର୍ଜନ୍ମ, ସ୍ୱର୍ଗ-ସୁଖ, ବିଧାତା-ମମତା,
ସକଳ ସେ ଉପହାସ ! ମିଥ୍ୟା-ତୀବ୍ର-ବ୍ୟଥା !

—୯—

ପୋଛରେ ସନ୍ତମ ତୋର ତୀବ୍ର-ଲୁହ ଲହୁ,
ବିଫଳେ କାହିଁକି ଏତେ ଯନ୍ତ୍ରଣା ତୁ ସହୁ ?

ବହୁଗନ୍ଧ ସ୍ରୋତ ଆଜ ନ ଆସେ ଲେଉଟି,
ଚଣ୍ଡକରି ଆସ ଶତ କାଳର ଭ୍ରୂକୁଟି ।
ବସ ଆସି ପାଶେ ମୋର ବିକଳ ଉଦ୍ୟାନେ,
ବାସ୍ତବ ସ୍ୱପନ ସଖି ରଚିବ ତୋ ପ୍ରାଣେ ।
କାବ୍ୟରସେ ନିଷିଞ୍ଚିବ ତୋ କ୍ଷତ ରୁଧିର,
ବାସ୍ତବ ସଙ୍ଗୀତେ ସ୍ୱପ୍ନ ତୋ କର୍ଣ୍ଣ ବଧିର—
ପୁଣି ହେବ ଉଜ୍ଜୀବିତ ! ଭଗ୍ନ ତୋର କଣ୍ଠ,
କୋଟର-ନିମଗ୍ନ-ମ୍ଳାନ ନୟନ ଦୁଇଟି,
ପୁନଶ୍ଚ ଉଠିବ ତେଜି ! ମ୍ଳାନ ଓଷ୍ଠ ଜବା—
ଯୌବନ ଆଭାରେ ପୁଣି ହେବୁ ମନୋଲୋଭା ।
ସେ ଆଲୋକେ ବଞ୍ଚିବ ମୁଁ ଆଜ ଯେତେ ଦିନ,
ଏ ଚିତ୍ର ପ୍ରତିମା ଶେଷେ ହେବ କାଠ-ଦାର୍ଣ୍ଣ ।

—୧୦—

ଆସିଲା ଜୀବନ ସନ୍ଧ୍ୟା ! କାହିଁକି କାତର ?
ମଉଳି ନାହିଁ ତ ତୋର ଅରୁଣ ଅଧର,
କପଳୁ ମଉନ ରାଗ, ସେ ନୟନୁ ତେଜ,
ଅକାଳେ କାହିଁକି ଆଣୁ ଅନ୍ତରର ଖେଦ ?
ତେଜହୀନ ହୋଇନାହିଁ ସେ ଚକ୍ଷୁର ଦାମ,
ଝଙ୍କାରେ ସ୍ପନ୍ଦନେ ଝରେ ପାର୍ଦ୍ଧ ଛବା ଯାମ ।
ଅଘଟନେ ଘଟାଇବୁ କରିଛୁ ଯେ ଆଶ,—
ସାର ହେବ ସିନା ତୋର ଆଜୀବନ ପ୍ରାସ ?
ଅଟଳ ବିଶ୍ୱାସ ତୋର ଆତ୍ମପ୍ରବଞ୍ଚନା,
ସହସ୍ର କଳ୍ପନା ଭୂତ ଦେଖାଏ ଛଳନା !

ଲୁହେଲକା ସନ୍ତରଣେ ଶ୍ରେଷ୍ଠ ହେବ ପାଙ୍କ;
ଜଳିତ-ନିଶ୍ୱାସ-ସୁଖେ ସାର ଅବସାଦ ।
ବାସ୍ତବ ଭୁ, ପୁଣି ମୁହିଁ, ବର୍ତ୍ତମାନ-ସୁଖ,
ଭବିଷ୍ୟ ଚନ୍ଦ୍ରାରେ କମ୍ପା ବଫଳ-ଅଭିମୁଖ୍ୟ !

—୧୧—

ରୋପିଲୁ ପାଦପ ଗୋଟି ପରମ ଉତ୍ସବ,
ଆଶା ତୋର ଭବିଷ୍ୟତେ ହେବ ଫଳବନ୍ତ ।
କାହିଁ ସେ ସୁସ୍ୱାଦୁ ଫଳ ? କାହିଁ ଗୁଳ୍ମ, ଗେ ଠି ?
ଅଲକ୍ଷରେ କାଳ ତ ର ମୋଡ଼ ଗଲା ତୋଟି,
ଯେସ୍ନେ ପକ୍ଷୀ ଜାବୀ ! ବୃଥା ଭବିଷ୍ୟ କଳ୍ପନା
ବୃଥା ବର୍ତ୍ତମ ନୁ ତୋର ହେନ୍ନ ବୁଦ୍ଧି କଣା ।
ବୃଥା କଳପନା ସୁଖ ଭବିଷ୍ୟେ ବଢ଼ାଇ,
ସତ୍ୟ ବର୍ତ୍ତମାନ, ସତ୍ୟ ଜୀବନ-ଲଢ଼ାଇ ।
ଆଜ ଯା ଜୀବନ୍ତ କାଲି ମୃତ, ନୁହେଁ ସ୍ପୃଶ୍ୟ,
ଆଜର ପୀରତି ସ୍ନିଗ୍ଧ କାଲି ବଡ଼ଦୃଶ !
ଆଜର ସୌହାର୍ଦ୍ଦ୍ୟ ମାୟା କାଲିକ ଅସାର;
ସକଳ ପରମ ସତ୍ୟ ଶୁଏ ସ୍ମୃତିସାର ।
ଆବର୍ତ୍ତନ ବିବର୍ତ୍ତନ ଯଥା ମେଘ ଲୋକେ,
କିବା ନିତ୍ୟ ଆଶ୍ୱାସନା ଝୁରିବ ତୋ ଶୋକେ ?

—୧୨—

ଏ ପ୍ରପଞ୍ଚ ଯନ୍ତ୍ରଣାରୁ ହୋଇ ବାକୁ ପାର,—
ନୈରାଶ୍ୟର କଷାଘାତୁ ଲଭିବୁ ନିସ୍ତାର ।
ମିଶିଲୁ ମାଟିରେ ଆଜ······କାଲି ପିତା ମାତା !
ଆନ କିଏ କେତେ ଭର ଦେବ କାଳ ଖାତା !

କି ଭାବନା ତୋର ? କୋଟି ଯନ୍ତ୍ରଣାର ଶେଷ,
ପରମ-ପ୍ରୀତି-ଦାୟକ ମୃତ୍ତିକା ଆଶ୍ଳେଷ !
ଶ୍ୟାମଳ ବନାନୀ, ମୁକ୍ତ ଆକାଶ, ପବନ,
ପ୍ରକାଶିତ କଳ କଳ ସଲିଳ ପ୍ଲାବନ,
ନାଳଗର୍ଜି, କାଶ ହାସ, ଶିବା ଉଚ୍ଚ ରଡ଼,
ପରମ-ପ୍ରୀତି-ଦାୟକ ମର୍ତ୍ତ୍ୟଗୀତିଠୁଁ ବଳି ।
ବଳେ ମନ ସେ ଶୟନେ ଭୁଲେଁ ମର୍ତ୍ତ୍ୟଗ୍ଳାନି,
ପାଶେ ମୋର ସ୍ୱପ୍ନ-ମଗ୍ନ ଶ୍ୟାମଳ ବନାନୀ ।
ହେବ କେବେ ସେତିକି ଭାଗ୍ୟ ? ହେବ ତୋର ସାଥି,
ଭୁଲିଯିବ ମିଥ୍ୟା-ଭୟ ଏ ବିରହ ରାତି ।

— ୧୩ —

ଦୁଇଦିନ ଲାଗି ଆସି ଗଲୁ ଚିତା ଜାଳି,
ହତଭାଗ୍ୟ ପିତା ମାତା ହେଜୁଛନ୍ତି ଭାଳି ।
ପୁଷ୍ଟ କରିଥିଲେ ଢାଳି ହୃଦୟ ଶୋଣିତ,
ନ ରହିଁଲୁ ଥରେ ଫେରି, ବଡ଼ ଆଚମ୍ବିତ !
ତୋ କୋମଳ ବପୁ ଗୋଟି କ୍ଷୁଦ୍ର ପକ୍ଷୀ ପ୍ରାୟ,
କାନ୍ଦୁଥିଲୁ ଯେବେ ଯେହ୍ନେ ଶିଶୁ ଅସହାୟ—
ଧରିବା ଦରବ କରୁ ପଡ଼ୁଥିଲୁ ଖସି,—
କ୍ଷୁଦ୍ର ସେନ୍ଧ ମୁଷ୍ଟି ଖଣ୍ଡି ଯେହ୍ନେ ପୂର୍ବ ଶଶୀ ।
ତୋହଲାଗି ପିତା ମାତା ନିଶି ଉଜାଗର,
ଅଳପ ବ୍ୟଥାରେ ତାଙ୍କ ବୁକୁ ଜର ଜର ।
ଗଲାତ ସେ ତନୁ ଆଜ ମିଶିଛି ମାଟିରେ,
କବା ଅଛି ଆଶ୍ୱାସନା ଶୂନ୍ୟ ଧରଣୀରେ ?

—୧୪—

ଧରିଥିଲ ମାତା ତୋତେ ଗର୍ଭେ ଦଶମାସ,
ଦେଇଥିଲ ମୁଖେ କ୍ଷୀର, ତେଣୁ ଉପହାସ ?
ସୁଦୂର ମାନସ ହଂସ, ଦୂରେ ଯିବା ଇଚ୍ଛା,—
ବନ୍ଧନ ତୋ ଧରଣୀ; ଶୂନ୍ୟେ ତୋ ମାଧୁରୀ ।
ଡାକ ନାହିଁ ମାଚ ଥରେ ଭୁଲେ ମାଆ ବୋଲି,
କର ନାହିଁ ଅନ୍ନ ଗଣ୍ଡିଧନ ମୁଖ ଖୋଲି ।
ଅସହ୍ୟ ଯନ୍ତ୍ରଣା ଜାଲେ କଣ୍ଠ ହେଲ ରୁଦ୍ଧ,
ନ ଜାଣି ତୋ ପିତା କଷି ବନ ହୁଏ କ୍ଷୁବ୍ଧ ।
କହୁଥାନ୍ତୁ ବାବୁ ଯେବେ ଫିଟାଇ ତୋ ପାଟି,
ଟାଳି ଦେଇଥାନ୍ତା ରକ୍ତ ତା କଲଜା କାଟି ।
କେଉଁ ସଜେ ଆସି ଗଲୁ ନ ପାରିଲ୍ଲ ଜାଣି,
କାନ୍ଦଇ ଜନନୀ ତେଣୁ କରେ ଶିର ହାଣି ।
ଅନ୍ଧ ସମ ଝୁରିଛନ୍ତି ଦୂର ଅନ୍ଧକାରେ,
ଦୁର୍ଦ୍ଦିନ ନୈରାଶ୍ୟ ପ୍ରାଣେ କୁଳିଶ ପ୍ରହାରେ ।

—୧୫—

ଗାଏ ଯୋଗୀ, 'ଭସ୍ମ ହେଉ ପଛେ ସ୍ୱର୍ଗଲୋକ—
ଶତ୍ରୁଙ୍କୁ ନ ହେଉ କାଳେ କାଳେ ପୁତ୍ର ଶୋକ ।'
ପଚିନ୍ତୁ ମାଟିରେ ପୁତ୍ର, ସ୍ୱର୍ଗ ଲୋକ ଚୂନା
ଭସ୍ମ ହୁଏ ଆଖି ଆଗେ କେତେ ଖାଣ୍ଟି ସୁନା ।
ସବୁ ତ ସହୁଛୁ ବଧ୍ୟ, ସହିବ ଭବିଷ୍ୟେ,
ମିଶିଛୁ କ୍ରନ୍ଦନ, ଦୀର୍ଘଶ୍ୱାସ ଦଶ ଦିଗେ ।

ଷସ୍ଥ ବୁଦ୍ଧି ହେଲ କାହିଁ କହ ଏ ମାଟିରେ ?
ଜଳଜ ଜ ବଣ କାହିଁ ଅଜ୍ଞାନ ତିମିରେ ?
ପିତା ଜନ୍ମଦାତା ବୋଲି କରେ ମନସ୍ତାପ,
ସ୍ୱରେ ପୁଣି ଅସ୍ତ୍ର ଜଳେ ଗୂଢ଼ ଆତ୍ମ ଘାତ ।
ମାନ କାହିଁ ମିଳେ ତଳେ ଆଲୋକ ସନ୍ଧାନ.
କାହିଁ ଦ୍ରବ୍ୟ ଜ୍ଞାନ ? କାହିଁ ମୁକତି ପ୍ରମାଣ ?
ସବେ କ୍ରୀଡାରତ ଶିଶୁ, ହଜଲେ ଖେଳନା,
ହଜେ ବୁଦ୍ଧି ନିତ୍ୟ ସତ୍ୟ, ବୁଦ୍ଧି ହୁଏ ବନ୍ଧ୍ୟା ।

— ୧୭ —

ଶୂନ୍ୟ ମହାଶୂନ୍ୟ ଏକା ସତ୍ୟ—ସନାତନ,
ଆସି ଯାଉଛନ୍ତି ତହିଁ ମେଘ ଅଗଣନ,
ଫୁଟେ ଅନୁକ୍ଷଣ ବହୁରୂପ-ରଙ୍ଗ-ମାୟା,
ରହି ତାକୁ ଅନ୍ଧକାରେ-ବୃଥା ହେଉ କାୟା !
କହିଛନ୍ତି ତଥାଗତ ବୁଦ୍ଧ ମହାଜ୍ଞାନୀ,
ତେସନେ ରଚନ୍ତି ଖେଳ ଶୂନ୍ୟେ ମହାପ୍ରାଣୀ ।
ଧରି କୋଟି ନାମ-ରୂପ ଯାନ୍ତି ପୁଣି ଲୁଚି,
ନମେଷକ ଲାଗି ପ୍ରୀତି-ସୌନ୍ଦର୍ଯ୍ୟ ମୁହୂର୍ତ୍ତ ।
ମିଶଇ ଅନଳେ ଦେହୀ ଦେହ ପଞ୍ଚଭୂତେ,
ମୁକ୍ତ ସମ ରହିଁଥାନ୍ତି ଦେବ-ଯମ-ଦୂତେ ।
ଘଟିବ ଅବଶ୍ୟ ଯାହା ଚିରନ୍ତନ ବିଧି,
କି କରିବେ ଦେବତା ବା ତାଙ୍କ ପ୍ରତିନିଧି ?
ଅନନ୍ତ ମାୟାର ତଳେ ନାହିଁ ଅବସାନ,
ସସୀମ, ସଙ୍କୀର୍ଣ୍ଣ, ଶିଶୁ-ମାନବର-ଧ୍ୟାନ ।

—୧୭—

ମାତା, ଜନ୍ମ-ଦାସୀ, ମଣୁ ସବୁଠୁଁ ଅଭାଗୀ ?
ହୋଇ କ ପାରିବୁ ଚିର ସଂସାର-ବିରାଗୀ ?
କାଲି କାଳ ମାୟା ପୁଣି କରିବ ତ ଗ୍ରାସ,
ଭୁଲିବୁ ସନ୍ତାନ ଶୋକ, ମୃତ୍ୟୁ-କ୍ଷତ-ତ୍ରାସ ।
ଢାଳିବୁ ତୁ ଦେହେ ମାୟା, ଯାହା ଅଛି ବାକି,
ନବୀନ ସୃଷ୍ଟିରେ ପୁଣି ଲଗାଇବୁ ଆଖି ।
କେତେ କେଶ ପ୍ରସାଧନ, ସିନ୍ଦୂର-ଧାରଣ,
ବହୁବିଧ ଅଙ୍ଗ-ରାଗ ହେବ ପ୍ରୟୋଜନ ।
ତାମ୍ବୂଳ ଅଧର ପୁଣି କରିବୁ ରକ୍ତିମ,
ଉଚ୍ଛଳ ବାସନା ତେଜେ ନୟନ ବଙ୍କିମ ।
ଲୁଚାଇବୁ କାଳ-କ୍ଷୟ ଯାହା ଶୁକ୍ଳ କ୍ଲେଶ,
ଯୌବନେ ଯେସନ ପୁଣି ମୋହ ସମାବେଶ ।
ଏ ତ ଶୂନ୍ୟେ ମେଘ-ଲୀଳା ! ହସ, ଜଗତେ ହସ;
ଭୁଞ୍ଜ ସବୁ ! ଭୁଞ୍ଜ ପ୍ରୀତି-ସୌନ୍ଦର୍ଯ୍ୟ-ଆଦର୍ଶ ।

—୧୮—

କାଲି ପୁଣି ଶିଶୁପୁତ୍ର ପୁନର୍ଜନ୍ମ-ଲଭ,
ପୁଣି ଭର୍ତ୍ତା ତୁଲେ ଉପୁଜିବ ନବଭାବ,
ନବ ରସ, ନବ କ୍ରୀଡ଼ା, ବ୍ୟଙ୍ଗ, କଉତୁକ,
କଳ୍ପିତ ଦେବତା ତୋର ହୋଇଯିବେ ମୂକ ।
ଅନ୍ଧକାର ମରୁଭୂମେ କାଲି ମହାଦ୍ରୁମ,
ହସିବ ଶରଦ-ଚନ୍ଦ୍ର ଆଜ ଯହିଁ ଧୂମ ।
ନ ଆସିଲା ଫେରି ଯେବେ ଗଲା ଯାହା ଆଜ,
କେଉଁ ଅଂଶ ଏ ସୃଷ୍ଟିର ପଡ଼ିବଟି ଭାଜ ? .

ମହାଶୂନ୍ୟେ ଏ ସକଳ ବାଣବାଦ୍ଧ କ୍ରୀଡ଼ା,
କହ ତାକୁ ନିୟତି ବା ପ୍ରକୃତିର ପୀଡ଼ା ।
କହୁଛନ୍ତି ତଥାଗତ କର୍ମ ଫଳ ଭୋଗ,
ସାଧ ସେଥିଲାଗି ଭକ୍ତି-ଜ୍ଞାନ-କର୍ମ-ଯୋଗ ।
ସକଳ କଳ୍ପନା ବେଗ, ମାଟି ଖାଲି ସାର;
ନିତ୍ୟ ସତ୍ୟ ନିୟତିର ନିଷ୍ଠୁର ପ୍ରହାର ।

—୧୯—

ପାପୀ ପିତା ? ପୁତ୍ର ଶୋକେ ପାପ ତାର ଭୋଗ ?
କହନ୍ତି ମାନବ-ଗୁରୁ ତା' ପାଚନ ଯୋଗ—
ବୈରାଗ୍ୟ ସାଧନ, ପୁଣି ଶତ ପ୍ରାୟଶ୍ଚିତ;
ଆପଣା କର୍ତ୍ତବ୍ୟ ଭୁଲି ସନ୍ଦିଗ୍ଧ ତା ଚିତ୍ତ ।
ଦେଖଇ ବଞ୍ଚନ୍ତି ସୁଖେ ମାନବ ଘାତକ,
ଶତକୋଟି ବ୍ୟକ୍ତିଙ୍କ ଶୋଣିତ ଶୋଷକ ।
ବିଳାସ-ବ୍ୟସନ-ରତ ସୁଖେ ସୌଧ ଚୂଳେ,
କହୁଛନ୍ତି ବାପୁ ସେବା ନଗ୍ରେ ନଦୀ କୂଳେ ।
ଯେତେକ ପରାଙ୍ଗ-ପୁଷ୍ଟ ସର୍ବେ ଭାଗ୍ୟବାନ,
ଯେ କୃଚ୍ଛ୍ର ସାଧଇ ଦଣ୍ଡ ତା ଲାଗି ବିଧାନ !
ଦୁର୍ବଳ ଯେ ଅସହାୟ ଧାଏଁ ମୃତ୍ୟୁ ମୁଖେ;
ତା ଲାଗି ଆସନ୍ତି କେବେ ଦେବତା ଉତ୍ସୁକେ ?
ଅବା ଅସହାୟ ଜନ ପାପ-ଜର ଜର,
ବଳିଷ୍ଠ ଦୁର୍ଦ୍ଦମ କ୍ଷମ ଧାର୍ମିକ-ପ୍ରବର ?

—୨୦—

କାହିଁ ଆସି ଗଲା ଉଢ଼ କୁହୁକ ଚଢ଼ାଇ,
ଚୂର୍ଣ୍ଣ କରି ଗଲା କାଳ ଜନମ ବଢ଼ାଇ,

ଭାଙ୍ଗିଗଲା ମାନବର କ୍ଷୀଣ ଅହମିକା,
ହରିଲା ଅନ୍ଧ-ମାଣିକ୍ୟ; ଝରହର ଶିଖା,—
ଜାଳିଗଲା ପ୍ରାଣ ପୁରେ; ହରିବ କେ ବ୍ୟଥା ?
ହରିବ କେ ଜନମର ଅଖଣ୍ଡ ଶୂନ୍ୟତା ?
ଶୂନ୍ୟ ପାରାବାରେ ଚଳେ ଜୀବନର ପୋତ,
ରୋଧି ନ ପାରିଲା କେହି ମୃତ୍ୟୁ ଖର-ସ୍ରୋତ ।
ଦାବାନଳ ଦହେ ଗୁଳ୍ମ ଲତା ଅନ୍ତରାଳେ,
ଈଶ୍ୱର ମଙ୍ଗଳମୟ ଶୁଣା କାଳେ କାଳେ ।
ଦୁଃଖ ଶୋକ ଅସ୍ଥି ମାଂସ ମେଦ କରେ କ୍ଷୟ,
ଗାଇବାକୁ ହେବ ମାତ୍ର "ଜୟ ପ୍ରଭୁ ଜୟ !"
ମୃକ୍ଷ ଫିଟାଇବା ପାପ ହେଉ ଉପବାସ,
କାହିଁକି ଜୀବନେ ଏତେ ଖାଦ୍ୟ ଉପହାସ ?

—୨୧—

ଶୂନ୍ୟେ ବାଟବାହା ଖେଳ ଲାଗିଛି ଲାଗିବ,
ସିନ୍ଧୁ ଅଭିମୁଖେ ସ୍ରୋତସ୍ୱତୀ ବହିଯିବ !
ତା ଗତି ପାରିବୁ ରୋଧି ? ବୃଥା ତୋ ଶୋଚନା,
ସୁଦୂର ପଥିକ ! ବୃଥା ହେଉ ପଥ ବଣା ।
ହରାଇଲୁ ଯେତେ ପଥେ ଚଖିଲୁ ସମ୍ବାଦ,
କୁସୁମ ଚୟନ-କ୍ରୀଡ଼ା ନାହିଁ ଅନ୍ତ ଆଦି,
ସେ ତୋର ବ୍ୟଥାର ଅଶ୍ରୁ ଶୋଣିତ ତର୍ପଣ,
ଆନନ୍ଦ ଗଦ୍‌ଗଦ ହାସ୍ୟ ପୀରତି ପ୍ଲାବନ ।
ସେତିକି ତୋ ବଇତନ ଆରେ ଶ୍ରମଜୀବୀ,
ରହିଁଥିବୁ ଧୂପଶିଖା ହେନେ ଯିବ ନଭ ।

ଚିତାଦ୍ୱପରେ ଆସେ ଯା'ର ଜୀବନ ନିଚୟ,
ସୃଷ୍ଟିରେ ହୋଇନ କାହିଁ ଅଭ୍ୟୁଦୟ କ୍ଷୟ ।
ଅଶ୍ରୁରେ ଦେଇନ ଆସି କେହି ବରାଭୟ,
ଦେଖି ନାହିଁ ଛନ୍ତି କାହିଁ ପ୍ରଭୁ ଦୟାମୟ ।

— ୧୨ —

ଏ ମାଟିରେ ସ୍ଥଳପଦ୍ମ ଫୁଟି ଉଠେ ନିତି,
ଫୁଟେ ହାସ୍ୟ-ପ୍ରୀତି-ଜୀବନର ଜୈବ-ଗୀତି ।
ଅପୂର୍ବ ସୁନ୍ଦର ଟିକ ପ୍ରତିମା ପ୍ରକାର,
ହସୁଥାଉ; ତୋ ପଶ୍ଚାତେ ସହସ୍ର ବିକାର !
କଫ, ଶ୍ଳେଷ୍ମା, ପିତ୍ତ, ବାୟୁ, ଏକ ପରେ ଆନ,
ଲଗି ରହିଥାନ୍ତି ପଛେ ହରିବାକୁ ପ୍ରାଣ ।
ସେ ସକଳ ଭୁଲି ପ୍ରାଣୀ ହସେ ମନ ସୁଖେ,
ସକଳ ଐଶ୍ୱର୍ଯ୍ୟ ଭୋଗ କରଇ ଉତ୍ସୁକେ ।
ରଚଇ ବାଲୁକା ଘର, ଭୁଲି ଭାଗ୍ୟ ପୀଡ଼ା,
କାଳ କୂଳେ ଆରମ୍ଭଇ କେତେ ଦ୍ୟୂତ କ୍ରୀଡ଼ା !
ଦୁଇଦିନ ସ୍ଥଳ-ପଦ୍ମ ହୃଦୟ ନନ୍ଦନ,
ଦୁଇଦିନ ପରେ ବାବୁ ମୁଦିଲୁ ନୟନ ।
ଅଶେଷ ଯନ୍ତ୍ରଣା ଗ୍ରାସେ କଲୁ ହାହାକାର,
ନିଭିଲା ପ୍ରଦୀପ ରହିଁଥିଲା ନିର୍ବିକାର ।

— ୧୩ —

ଯନ୍ତ୍ରଣାର ହେଲା ଶେଷ ମୁଦିଲୁ ନୟନ,
ମୋହାନ୍ଧ ଜନନୀ ଚୁମ୍ବେ ମୁଖ ଘନ ଘନ

ନ ଚୁମ୍ବିଁଲୁ ଥରେ ଆଜ, ସକଳ ଶୀଥିଳ,
ହସ୍ତ ପଦ ସବୁ ସ୍ଥିର; ନଶ୍ୱାସ-ଅନଳ !
ମାଟି ଚୁମ୍ବ ? ଶୁଷ୍କ ମାଟି ?—ଭ୍ରାନ୍ତ ହେଲ ଦାର୍ଶନି !—
ଲକ୍ଷ କୋଟି କୀଟ ତୋତେ ରହିଛନ୍ତି ଚୁମ୍ବିଁ,—
ନୁହେ ତା' ନିଶ୍ୱାସ ! ପୁଣି ଚୁମ୍ବିଲା ବଦନ,
କ୍ଷୁଦ୍ର ତୋର ମୁଖ-ପଦ୍ମ ! ସବୁ ଅକାରଣ !···
ଦଶମାସ ଧରି ଗର୍ଭେ ରକ୍ତ ପୁଷ୍ଟ କରି,
ଆପଣା ଛୁଆଁକୁ ଦେଖିବ କେ ପର ଘରି ?
ଏ ସକଳ ଯେବେ ମାୟା କହ ସତ୍ୟ କିସ ?
ସେହି ସତ୍ୟ ଖୋଜି ବୁଲେଁ ଆଜି ଦଶ ଦିଶ ।
ଶୋକାନ୍ଧ-ଜନନୀ-ହୃଦୁଁ ଲଭୁ ପଡ଼ି ଝରି,
ବୌଦ୍ଧରେ ପରମ ସତ୍ୟ ମୃତ୍ୟୁ ବିଶ୍ୱକରି ।

—୧୪—

ହେଳହାନ ଚିତାନଳ ଚୁଟିପାଏ ଖରି,
ଆତଙ୍କ ଆଣଇ ପ୍ରାଣେ ଦିଶେ ଭୟଙ୍କର ।
ଆପଣାର ଧୂଏଁ ଶିଖା କ୍ରମେ ଯିବ ଶଙ୍କି,·
ଅନ୍ତମେ ନିର୍ବାଣ ପ୍ରାପ୍ତି ଭସ୍ମେ ସ୍ମୃତି ରଖି ।
ଯେ ଦେହ କରିଛି ଗ୍ରାସ ଯେବା କଲ୍ଲ ଗ୍ରାସ,
ସକଳର ଲାଗି ତୀବ୍ର କାଳ ଉପହାସ ।
କୁରଙ୍ଗୀ କାନ୍ଦଇ ବନେ, କାନ୍ଦଇ କପୋତୀ,
କପୋତ ବନ୍ଧୁନେ ତାର ପରମ ବିପତ୍ତି ।
କାନ୍ଦି ଉଠେ ବଲ ବନ କାନନ ପ୍ରାନ୍ତର,
ଶାନ୍ତ ହୁଏ ସବୁ କେତେ ଦିବସ ଅନ୍ତର ।

ଶୁଖିଯାଏ ଲୁହ ଧାର ଅସ୍ପ-କ୍ଷତ-ଗାର,
ଶିତାନଳ ସମ ଶାନ୍ତ ଏ ଚଣ୍ଡ ବିକାର ।
ସକୁଠି ରହିଛି ଲାଗି କାଳର ଇଙ୍ଗିତ,
ହେଜ ହେବ ଯେତେ ଇଚ୍ଛା ଚିତ୍ତ ଆନ୍ଦୋଳିତ ।

— ୨୫ —

ଆଶ୍ୱାସନା ? ମାନବର ? ଅବା ଦେବତାର ?
ଦେଖ ନାହିଁ ତଳେ କାହିଁ ଥିଲା ପର କାର ।
ସନ୍ତ୍ରବ ବରଷା ଶୀତ ବଣ ଅଜଗର,
ଝୁଲୁଛି ଶଗଡ଼ ଚକ, ଖସୁଛି ପଥର,
କ୍ଷଣେ ରହି ପୁଣି ଗୁଳଅଛି ମନ୍ଦ ଗତି,
କର ନାହିଁ ଦନେ କାହିଁ ତଳେ ତ ଆପତ୍ତି ।
ଭଗବାନ, ପ୍ରଭୁ, ବନ୍ଧୁ, ଆତ୍ମୀୟ-ସ୍ୱଜନ,
ହୋଇ ନାହିଁ ଦନେ ତଳେ ତାର ପ୍ରୟୋଜନ !
ଦେଖିଛି ତା ସ୍ଥିର ଆଖି, ବୁଝିଛି ତା ବ୍ୟଥା,
କଳପନା ସ୍ୱପ୍ନେ ପୁଣି କାହିଁକି ମମତା ?
ବାସ୍ତବରୁ ଦଶୁ ନାହିଁ କେହି ପ୍ରୀତିକର,
ଲୋଡ଼େ ନା ଦର୍ଶନ ପର-ଜୀବନ-ଅମର ।
ପରମ-ପୀରତି-ଦାୟୀ କ୍ଷତ ଅଶ୍ରୁ ବେଗ,
ମଧୁର ଶୂନ୍ୟତା-ପୀଡ଼ା, ବଜନତା ବେଗ ।

— ୨୭ —

ରହନ୍ତୁ ଦେବତା ସୁଖେ ନେଇନ ଛଡ଼ାଇ,
ଅଛନ୍ତି ନାହାନ୍ତି ବୋଲି କରୁନ ବଡ଼ାଇ !

ଜ୍ଞାନର ଗୌରବ ନାହିଁ, ସାଧି ନାହିଁ ଯୋଗ,
ସାର ମୋର ବର୍ତ୍ତମାନ ସ୍ୱଜନତା ଭୋଗ ।
ଦେଖିଛୁ ଜୀବନ, ଜୀବା, ଲଭିଛୁ ତା ସ୍ୱାଦ,
ଦେଖିନି ଯା ତାହା ଲାଗି କାହିଁ ପାଇଁ ବାଦ ?
ଲଭିଛୁ ଅନ୍ତରେ ବୋଲି ଜୀବନ ମାଧୁରୀ,
କୁରଙ୍ଗ ସମାନ ଦବାନଳି ହୁଏ ଝୁରି ।
ସେହି ମୋ ପରମ ସତ୍ୟ ପ୍ରତ୍ୟକ୍ଷାନୁଭୂତ,—
ବାସ୍ତବ ଜୀବନ, ସାର ମରଣର ସ୍ମୃତି !
ଦେଖେଁ ଫୁଲମଦ୍ଦୁ ପଥ ପାର୍ଶ୍ୱେ ଉଠେ ଫୁଟି,
ଆନନ୍ଦେ ବିହ୍ୱଳ ହୋଇ ନଏଁ ମୁଁ ସାଉଁଟି ।
ମଉଳି ଯାଏ ସେ ପୁଣି !···ଝରି ପଡ଼େ ଝରି !···
ସୁଦର୍ଘ ମୋ ଯାତ୍ରା ପଥ ଧୀରେ ଆସେ ସରି ?

—୨୭—

ହେଉ ସେ ସକଳ ମାୟା, ଅବା ସ୍ୱପ୍ନ ପ୍ରୀତି,
ସ୍ୱପ୍ନ ଆଗେ ଯେ ଜୀବନ ଥାଏ ତାର ରୀତି ।
ଜୀବନ ! ଜୀବନ ! ଜୀବ ସୃଷ୍ଟି ସୁବିପୁଳ !
ସେ ମୋର ସୌନ୍ଦର୍ଯ୍ୟ ସତ୍ୟ ସଙ୍ଗୀତ ଅତୁଳ !
ସତ୍ୟ ପୁଣି ମୃତ୍ୟୁ, ଜୀବ-ଅଶେଷ ଯନ୍ତ୍ରଣା,—
ତୁମରି ଦର୍ଶନେ ଯାହା ମାୟା ବୋଲି ଗଣା—
ପରମ ଆଶ୍ୱାସ ମୋର ! ନିତ୍ୟ ଭଗବାନ !
ପ୍ରାଣ-ଅପୂର୍ବ-ସୌନ୍ଦର୍ଯ୍ୟ ନିତ୍ୟ କରେଁ ଧ୍ୟାନ ।
ପ୍ରାଣ-ପ୍ରୀତି-ସୁଧା ବିନା ହରିବ କେ ତୃଷା !
ଅଖଣ୍ଡ ସେ ଚନ୍ଦ୍ରାଲୋକେ, ଶାରଦୀୟ ଉଷା !

ପିଇଛୁ ଅମୃତ ବୋଲି ହେଉଅଛୁ ଝୁରି,
ମାରଟେ ହୃଦସ୍ପୃ ଗୋଟି ହେଉଛୁ କଚୁରି ।
ଜାଣିଛୁ ସରବ ଧନେ ଅଶ୍ରୁକ୍ଷତ କ୍ଲେଶ,
ଦୀର୍ଘ ଏ ମୋ ଯାତ୍ରା ପଥ ଯିବେନ ହେବ ଶେଷ ।

—୨୮—

ରମଣୀୟ ଅସ୍ତରାଗ ଶୈଳ ପରପାରେ;
ଅଦୃଶ୍ୟ ହେବାର ପୋତ ଦୂର ପାରାବାରେ,
ନିର୍ବାଣ ଉନ୍ମୁଖ ଚିତା କ୍ଷୀଣ ଜଳିବାର,
ମାନବ ପ୍ରାଣର କ୍ଷତ ବ୍ୟଥା ହାହାକାର !
ଅପୂର୍ବ ମାନବ ପ୍ରାଣେ ମରଣ ସଙ୍ଗୀତ,
ନିଷ୍ଫଳ ଆଶ୍ୱାସେ କର ନାହିଁ ବିଚଳିତ,
ଅପୂର୍ବ ମରଣ ଶାନ୍ତି ବିରହ-ମାଧୁରୀ,
ବିଫଳ ବର୍ଣ୍ଣନ-ତର୍କେ ଦିଅ ନାହିଁ ଚୂରି !
ମୋତକ ଝରିବ ? ଝରୁ, ଝରୁ ସେ ରୁଧିର,
କଳ୍ପିତ ଆଶ୍ୱାସେ ପ୍ରାଣ ନ କର ଅସ୍ଥିର,
ଅଶ୍ରୁ ସଙ୍ଗୀତରୁ ବଳି କି ଅଛି ମଧୁର !
କଳ୍ପିତ ଭରସା ତର୍କ ପ୍ରହାର ନିଷ୍ଠୁର ।
ବୁଝିଛି ଯେ ଧନେ ମୃତ୍ୟୁ ବେଦନା ମାଧୁରୀ,
କଳ୍ପିତ ଦେବତା-ଲୋକେ ହେବ ନାହିଁ ଝୁରି ।

—୨୯—

ଦୀର୍ଘ ଯାତ୍ରା ପଥେ ଦୂର ଅସ୍ତରାଗ ଛାୟା,
ଉପୁଜାଏ ଶୂନ୍ୟ ପ୍ରାଣେ ଅପରୂପ ମାୟା ।

ଦୂର ଗତି ଅନ୍ଧକାରେ ହବସ ସମାଧି,
ପ୍ରେତ-ପ୍ରୀତି-ଶେଷ-ସ୍ମୃତି ରଖିବ ସମ୍ବାଦ ।
ଏ ଶୂନ୍ୟ ହୃଦୟେ ସେ ମୋ ପରମ ସମ୍ବଳ,
ଆତ୍ମ ଅନୁଭୂତି ତହିଁ ସୁଲଭ ସରଳ ।
ସେ ଦୂର ଉଟିମା କୂଳେ ଡାକଇ ଶ୍ମଶାନ,
ଡାକେ ଭସ୍ମ ଡାକେ ମାଟି, ଦେବେ ନିତ୍ୟ ସ୍ଥାନ ।
ମୃତ୍ତିକା ସଙ୍ଗୀତ ପ୍ରାଣେ କରଇ ଅସ୍ଥିର,
ତା ଛନ୍ଦେ ମଧୁରତର ଶୁଣି ନାହିଁ ଗିର ।
ଜୀବନର ଅପୂର୍ଣ୍ଣତା ତହିଁ ପରିପୂର୍ଣ୍ଣ,
ଜୀବନ ମାଧୁର୍ଯ୍ୟ ତହିଁ ନୁହେଁ ସେ ନିର୍ଜନ ।
ପରିଶ୍ରାନ୍ତ ଯାତ୍ରୀ ଭାଳେ ଯାତ୍ରା କେବେ ଶେଷ—
ସୁଲଭ ହୋଇବ କେବେ ମୃତ୍ତିକା ଆଶ୍ଳେଷ ?

—୩୦—

ଦୁଇ କୂଳ ଖାଇ ଗଲେ ଦୂରେ ବନ୍ୟାଜଳ,
ମାରବତା ଧ୍ୟାନ ଭଙ୍ଗି ଶୁଭେ କଳ କଳ ।
ଅନନ୍ତ କାଳର ସେ'ବା ନିତ୍ୟ ସତ୍ୟ ବାଣୀ,
ହେ ସୁଦୂର ଯାତ୍ରୀ ପାର ଯେବେ ନଅ ଗୁଣି ।
ଭୁଞ୍ଜି କରି ଶୋକ ଅଶ୍ରୁ ଛୁଟି ଗଲ ଖରି,
ଡାକଇ ମରଣ—ଶାନ୍ତ ଡାକଇ ସାଗର ।
ଅଗ୍ରସର ! ଅଗ୍ରସର ! କାହିଁ ଅବସର ?
ବାରି ବାଦ କ୍ରୀଡ଼ା ଶୂନ୍ୟେ ଭଜବ ନକର ।
କ ହେବ ଶୋଚନା କରି ଆରେ ପରବାସୀ,
ଖର କାଳସ୍ରୋତେ ସୁଖେ ଦୂରେ ଗଲ ଭାସି ।

କଳପନା ଆଶ୍ୱାସନା ଭୁଞ୍ଜ ଉପହାସ,
ବୃଥା ଅମୃତର ଆଶେ କରୁ ଉପବାସ ।
କେବଳ ଛଳନା ସାର ମରଣ ଯାବତ,
ମୂକ ଅଭଚଳ ଯେସ୍ନେ ଦୂର ପରବତ ।

—୩୧—

ସଂଗ୍ରାମ ଆହତ କ୍ଲାନ୍ତ ମାନବ କ୍ରନ୍ଦନ,
ଶୁଣ କୋଟି ପିଷ୍ଟ ପ୍ରାଣ ବ୍ୟାକୁଳ ସ୍ପନ୍ଦନ ।
ହତାଶର ହାହାକାର ନିଷ୍ପେଷିତ ବ୍ୟଥା,
ବଞ୍ଚିବାର ଲାଗି କିବା ପ୍ରୟାସ ମମତା ।
ରୋଗ ବ୍ୟାଧି ଅନାହାର ଭିକ୍ଷୁଅଛି ଛେକ,
ପ୍ରବଳର ନିଷ୍ପେଷଣେ ନୋହେ ମୁଣ୍ଡ ଟେକ ।
ଭଗ୍ନ ଗ୍ରୀବା, ମ୍ଳାନାଧର, ନିଷ୍ପ୍ରଭ ନୟନ,
ବକଳେ ଘୁଡ଼ନ୍ତ ରଡ଼, 'ଜୀବନ ! ଜୀବନ !'
ଭୁଲି ସ୍ୱାର୍ଥ ଅଶ୍ରୁ ତୋର ଅଛି ନା ସାହସ,—
ଫୁଟାଇବୁ ମୁଖେ ତାଙ୍କ ଆଶା ମୃଦୁ ହସ ?
ତୋହ ସମ ଛନ୍ତି ଯେତେ ସନ୍ତାନ ବଞ୍ଚିତ,
ତାଙ୍କ ଲାଗି ଅଛିଟି କି ଆଶାର ସଙ୍ଗୀତ ?
କହିଯାଅ ତାଙ୍କୁ କଥା, ସେ ଯେ ଉପବାସୀ,
କ୍ଷୁଦ୍ର—ସ୍ୱାର୍ଥ—ବ୍ୟଥା ଖର ସ୍ରୋତେ ଯାଉ ଭାସି ।

—୩୨—

କଳ କଳ ଛଳ ଛଳ ସ୍ରୋତ ଉଚ୍ଛଳ,
ସ୍ୱାର୍ଥ ଚିନ୍ତା ଅଶ୍ରୁ ଲାଗି କାହିଁ ଅବସର ?

ସକଳେ କରିବେ ଯେବେ ହାର ଏ ବନ୍ଧନ,
ରୋପିବ କେ ବୃକ୍ଷ କରି ସଲିଳ ସେଚନ ?
ସମ୍ଭବ କା ଯୋଗୁଁ ମର୍ତ୍ତ୍ୟ ମରୁରେ ନନ୍ଦନ ?
ପୁଷ୍ପ ଫଳବନ୍ତ ହେବ ଚିତ୍ତ ଏ ଜୀବନ ?
ଜୀବନ ମାଧୁର୍ଯ୍ୟ କିଏ ଗାଇବ ସଙ୍ଗୀତେ ?
ପ୍ରୀତି ସୁରଧୂନୀ ଆଣିବ କେ ପ୍ରାଣୀ ହିତେ ?
ଚିତ୍ପୂର୍ଣ୍ଣ ଚିରଜନ୍ମେ-କହେ ଶାସ୍ତ୍ର ଗୀତା !
ଜୀବନେ ଯା ଅସମ୍ଭବ ମରଣେ ସେ ମିଥ୍ୟା !
ରହିଲା ଅପୂର୍ଣ୍ଣ ଯେତେ, ରଖିଲୁ ଯା ବାକି.
ନ ଆସିବୁ ଆଉ ଫେରି; ମାଟି ତାର ସାଥି ।
ଫୁଟାଇ ଯା' ଏ ଜୀବନେ ଯେତେ ପୁଷ୍ପରାଶି,
ଉଦ୍‌ଭଟ କଳ୍ପନା ଫିଙ୍ଗି ସ୍ଥୂଳ ସ୍ରୋତେ ଭାସି ।

—୩୩—

ଉପୁଜଇ ଶଙ୍କା ଚିତ୍ତ ଭାସି ନାହିଁ ବୋଲି,
ମୂକ ହେଣୁ ଗାଇ ନାହିଁ ଉଚ୍ଚ କଣ୍ଠ ଖୋଲି ।
ଫୁରିବ ତୋ କଣ୍ଠେ ବାଣୀ ଆପଣାର ଗୁଏଁ,
ଭସାଇ ପାରିଲେ ଥରେ ତୋ ସନ୍ଧି କେ ପାଏ ।
ସୁଗମ୍ଭୀର ତୋ ସଙ୍ଗୀତ ହେବ ଉତ୍ସାରିତ,
କୋଟି ଚିତ୍ତ ହତ-ଆଶ ହେବେ ପୁଲକିତ ।
ମୃତ୍ୟୁ ଅନ୍ଧକାରେ ହେବ ଆଶାର ସଞ୍ଚାର,
ହସିବ କୁସୁମେ ପୁଣି ଏ ମରୁ ସଂସାର ।
ପୁନର୍ଜନ୍ମ, ପରଲୋକ, ହେବ ନାହିଁ ଲୋଡ଼ା,
ଲୋଡ଼ା ହେବ ନାହିଁ ଋଷି-ଆଶୀର୍ବାଦ ଥୋଡ଼ା ।

ସତ୍ୟ ହେବ ଏ ଜୀବନ, ମୃତ୍ୟୁ, ପୁଣି ମାଟି,
ସତ୍ୟ ବର୍ତ୍ତମାନ, ବଧ କଳପନା ପାଟି ।
ବ୍ୟଥିତ ଗୋପନ ପ୍ରାଣେ ବନ୍ଧୁ ଅଶ୍ରୁ ରାଶି,
ମଧୁର ସୁଦୂରରେ ଯିବା ସ୍ରୋତ ଜଳେ ଭାସି ।

—୩୪—

ନାହିଁ ବନ୍ଧୁ ! ଭରସାର ନାହିଁ ପ୍ରୟୋଜନ,
ନାହିଁ ଶଙ୍କା, ଭ୍ରାନ୍ତି, ଆଶା, ପ୍ରୀତି-ଆୟୋଜନ,
କଳ୍ପନାର କ୍ରୀଡ଼ନକ, ବିଜ୍ଞାନ ବିକାର,
ଉତ୍ସବର କୋଳାହଳ,—ସବୁ ନମସ୍କାର !
ଏକାକୀ ନିଃସଙ୍ଗ ଯାହା ସାଥି ସ୍ରୋତ ଜଳ,
ମଧୁର ସୁଦୂର ଯାହା ଜଳ କଳ କଳ ।
ମଧୁର ଦୁର୍ଭେଦ୍ୟ ଶ୍ୟାମ ଦୁର୍ଦ୍ଦିନାନ୍ଧକାର,
ନୀରବତା ଶବ୍ଦଭେଦି ତୋ ସଙ୍ଗୀତ ସାର ।
ସେ କ୍ଷୀଣ ସଙ୍ଗୀତେ ହାସ୍ୟ-ଆଲୋକ ବିକାଶ,
ସେ ମାଧୁର୍ଯ୍ୟ ପିଷ୍ଟ-ପ୍ରାଣେ ଆଶା ପରକାଶ,
ଶୁଷ୍କ ମ୍ଳାନାଧରେ ଆଶା ହାସ୍ୟର ସଞ୍ଚାର,
ଏଥୁଁ ବଡ଼ ଆଉ କିବା ଲୋଡ଼ୁ ପୁରସ୍କାର ?
ସେତିକ ପରମ ଧନ ତୋର ପରବାସୀ,
ଅଗ୍ରସର ! ଅଗ୍ରସର ! ନୋହୁ ଉପବାସୀ !

—୩୫—

ସଙ୍କୀର୍ଣ୍ଣ ତୋ ଦୁଃଖେ ନିଖିଳର ଅନୁଭୂତି,
ନିଖିଳର ଅଶ୍ରୁ କ୍ଷତ ତୋ ପ୍ରାଣ ବିଭୂତି ।

ନିଖିଳ ହେବାରେ ତୋର ବ୍ୟଥିତ ସଙ୍ଗୀତ,
ତୋ ଆଶାର ବାଣୀ ହେଉ ନୀରବେ ମିଳିତ ।
କ୍ଷୁଦ୍ର ତୋ ବିରହ କ୍ଷୁଦ୍ରତମ ତୋର ଶୋକ,
ଜାଳୁରେ ନିଖିଳ ବିଶ୍ୱ ଜୀବନ ଆଲୋକ ।
ବିପୁଳ ପ୍ରାଣର ଅନୁଭୂତି ହେଉ ସାର,
ଆସୁ ମୃତ୍ୟୁ ସତ୍ୟ ହେଉ କାଳ ଅନ୍ଧକାର ।
ଭାସି ଚାଲ ଦୂରେ ଦୂରେ ନାହିଁ ଭୟ ଭୀତି,
ଫୁଟୁ କଣ୍ଠୁ ଅନିବାର ତୋ ଅମୃତ ଗୀତି ।
ନଶ୍ୱର ବାସ୍ତବେ ସତ୍ୟ ଜୀବନର ଲୀଳା,
ଫୁଟିବ ତ ପୁଣି ଫୁଲ ଯହିଁ ମଉଳିଲା,
ଶୂନ୍ୟେ ଚାହିଁ ! କ୍ରୀଡ଼ାରତ ବାରିବାହ ରାଶି !
ଫୁଟୁ ତୋ ସଙ୍ଗୀତ ! ଦୂର ସ୍ରୋତେ ଚାଲ ଭାସି ।

— ୩୭ —

ମଧୁର ଏ ଅନ୍ଧକାର ବାରମ୍ବର ବାର,
ମଧୁର ବ୍ୟଥିତ ପ୍ରାଣ କ୍ଷତ ଅଶ୍ରୁଧାର ।
ସଭ୍ୟତାର କୋଳାହଳ, ଶତ କ୍ଷିପ୍ର ଗତି,
ସକଳ ଐଶ୍ୱର୍ଯ୍ୟ ପ୍ରୀତି ଶେଷ ପରିଣତି,
ନିଭିଲା ପ୍ରଦୀପ ଯେତେ, ପଡ଼ିଲା ମଉଳି,
ତାରୁଣ୍ୟ ସମ୍ପଦ ଶୋଭା କ୍ଷଣକେ ବଉଳି,
ପ୍ରୀତି ନେତ୍ର ସ୍ନିଗ୍ଧାଲୋକ, ଯୌବନ-ଲାଳସା,
ସକଳ ଅନ୍ଧାରେ ଲୁପ୍ତ ବିଶ୍ୱାସ ଭରସା !
ସକଳ ଅଭାବ ଗ୍ଲାନି ଭୁଲଇଁ ମୁଁ ହେଲେ
ମରଣ ସମାନ ସତ୍ୟ ଅନ୍ଧକାର ମେଳେ ।

ମଧୁର ମୋ ଅଶ୍ରୁମେଳେ ଆତ୍ମ-ଅନୁଭୂତି,
ସକଳ ବଳୟେ ସାର ହେଉ ପ୍ରୀତି-ସ୍ମୃତି ।
ବିଦ୍ୟୁତ ସ୍ଫୁରଣ ! ଯାଏ ଅନ୍ଧକାର ଫାଟି—
ଦ୍ୱିଗୁଣ ଅଥବା ଗଲେ ଆଶା-ଲୋକ କଟି ।

—୩୭—

ଯୁଗେ ଯୁଗେ ନର ଶିଶୁ ଅନ୍ଧକାରେ ରହି,
ଖୁଞ୍ଚି କରି ଆପଣାର ବିଜ୍ଞାନ ବଢ଼ାଇ,
ପୁଚ୍ଛିଅଛି ଜୀବନର ଗୁପତ ରହସ୍ୟ;
ଗାଇଛି ବିଫଳେ କେତେ ଆଲୋକର ଯଶ ।
ମାତର ରହସ୍ୟମୟୀ ମୌନ ମୌନତର !
ବ୍ୟାକୁଳ ପ୍ରଶ୍ନର କିଛି ମିଳିନ ଉତ୍ତର ।
ମୃତ୍ୟୁ, ଅନ୍ଧକାର ଜଗ-ଶେଷ-ପରିଣତି,
ଯୁଗେ ଯୁଗେ ଅନ୍ଧ ନର ଢାଳିଛି ପ୍ରଣତି ।
ସକଳ ସଂଗ୍ରାମ ଶେଷେ ଗୌରବ ନିର୍ବାଣେ,
ଆଚ୍ଛାଦନ କରେ ଅନ୍ତେ ଏ ସୃଷ୍ଟି ପରାଣେ,
ପରମ ଜନନୀ ସମ ଢାଳଇ ଆଶ୍ୱାସ,
ସବୁ ସତ୍ୟ ସନାତନ ଅଶ୍ରୁ କ୍ଷତ ପ୍ରାସ ।
ସେ ସତ୍ୟ ସାନ୍ନିଧ୍ୟ ଲଭି ପ୍ରୀତି-ହୃଦ-ଶୋକ,
ଭୁଲଇଁ ଦର୍ଶନ, ତର୍କ, ଛଳନା-ଆଲୋକ ।

—୩୮—

ଶ୍ରାବଣର ଭରା ନଈରେ
ତରଣୀ ତୋ ଗୁଲ୍ ରେ ବାହି

ନ ଦିଶଇ ତିମିରେ ପାର
ତୋ ଆଲୋକ ନାହିଁରେ ନାହିଁ !
ଦିଶେ ନାହିଁ ଆକାଶ ତାରା,
ଗରଜଇ ବରଷା ଧାରା,
ପୁଲକଇ ଅବଶ ତନୁ
ଦୂର ମାଟି ଉଠଇ ଡାଇ
ତରଣୀ ତୋ କୂଳରେ ବାନ୍ଧ ! ୧ ।
ଖୋଜୁ ପୁଣି ଭରସା କାର ?
କଳପନା କରୁ ଛୁ ସାର
ବିଫଳ ତୋ ଆଲୋକ ଆଶା
ଦୂର କୂଳ ଦିଶଇ କାହିଁ ? । ୨ ।
ଭୁଲେ ନଦୀ ଲଙ୍ଘି ଦୁ' କୂଳ
ତା ମାଧୁର୍ଯ୍ୟ କାହିଁରେ ଭୁଲ ?
କଳ କଳ ଗାଏ ସଲିଳ
ଥର ଉଠେ ତିମିର ଆଇ । ୩ ।
ସାର୍ଥହୀନ ନିଶୂନ ପଥେ
ଗାଏ ଉଚ୍ଚେ ଅନବରତେ
ନିଶବଦ ସ୍ୱତ ଆନନ୍ଦ
ମିଳିବ କ ପଛକୁ ଗୃହିଁ ? । ୪ ।
ଆଗେ ପଛେ ହସଇ କାଳ
ଛନ୍ଦିଛୁ କେ ନିରାଶା ଜାଲ
ସତ୍ୟ କାହିଁ ? ସକଳ ଭୂତ—
କଳପନା କରଇ ବାଇ । ୫ ।

ଝଙ୍କାମି ଜଳେ ପକାଏ ଗାର,
କବ ଗାଲ୍-ଗଳପ ଷାର,
ଧ୍ୟାନ ଯୋଡ଼େ ଛିଡ଼ନ୍ତ ତାର
ଯୋଗୀ ଭୂତ ଅରୂପ ଧ୍ୟାୟୀ । ୭ ।
ଲେଉଟେ ନା ଉଜାଣି ସ୍ରୋତ,
ନଦେଇ ନାହିଁ ମରଣ ଖତ !
ସୁମଧୁର ଗୃଲବା ହସି
ମରଣର ବନ୍ଦନା ଗାଇ
ତରଣୀ ତୋ ଗୃଳରେ ବାନ୍ଧ । ୮ ।

—୩୯—

ଗୋଟି ଗୋଟି ବଉଦ ଭେଳା
ଗଲା ଭସି ଶୂନ୍ୟ ଆକାଶେ,
କେତେ ଦୀପ ଜଳେରେ ନଭ
ଆଲୋକର କ୍ଷୀଣ ଆଭାସେ ।
ଜବାଧର କାଶ ହାସରେ,
ତରୁଣ ପୀରତି ପ୍ରାସରେ,
ମଉଳିଲା ମଧୁ ମାସରେ
ଶୂନ୍ୟ ଗୃହେଁ କରୁଣ ହାସେ । ୧ ।
ଇନ୍ଦ୍ରଧନୁ ସପତ ରଙ୍ଗ,
ନବ ପ୍ରୀତି ଅଭେଦ-ସଙ୍ଗ,
ଧୂଆଁ ହେଲା ଶୂନ୍ୟରେ ସବୁ
ଗୃହିଁ ରହୁ ଆଉ କା' ଆଶେ । ୨ ।
ଦେଖୁ ଯେତେ ତୁ ସ୍ୱପ୍ନବାଜ
ତୋ ପ୍ରୀତିରେ କେନ୍ଦ୍ର କି ରାଜ ?

ବୃଥା ହୃଦେ ଧରୁ ତୁ ଠାଣି
ଦିନ ତୋର ଯାଏ ନିର୍ବାଣେ । ୩ ।
ଭୁଲ୍ଲ ଦୂର ସାଗର ନଦୀ,
କୂଳେ କିଆଁ ହେଉଛ ଧନ୍ଦ ?
ଆକୂଳ ତୁ ପତଙ୍ଗ ପ୍ରାୟେ
ମରିବାକୁ ଅନଳ ଧାଏ । ୪ ।

—୪୦—

ଭ୍ରୁଟି ବୁଝିଁ ବିଜନ ପଥେ
ବେଳା ତୋର ଗଲାରେ ବନ୍ଧୁ;
କାଳ ରାତି ଆସିଲା ମାତ୍ର
ତୋ ବେଦନା ପାରିଲୁ କହି ?
ବନ୍ଧୁ ଭୁଲେ ହେଲା କି ଦେଖା ?
ବଡିଲ କି ଆଲୋକ ରେଖା ?
ଯେ ତିମିରେ ସେହି ତିମିରେ
ଆଗ ଉଜା ଗଲୁ ତୁ ରହି
ତୋ ବେଦନା ନ ହେଲା କହି ।
ଆଗେ ପଥେ ଗଲେଣି ଯେତେ
ଭୁଲେ ଥରେ ଗୁହାଁଲେ କେତେ ?
କି ସ୍ୱପନେ ହେଲୁ ତୁ ବାଇ ?
ଉଦାସୀରେ ହସଇ ମହୀ ।
ତୋ ବେଦନା ନ ହେଲା କହି ।
ପଥ ଚଲା ଏକାକୀ ସାର,
ବହି ସ୍କନ୍ଧେ ଆପଣା ଭାର,
ଦୀର୍ଘ ଦୂର ବିଜନ ପଥେ
ଶୀତ ଖରା ବରଷା ସହି ।

ଅକାଳରେ ଝରିଗଲା ବ୍ୟଥା
ଏ ଜୀବନ ନିଗୂଢ଼ କଥା
କହିବ କେ କାହାକୁ ପୁଚ୍ଛି ?
ମରଣରେ ସରବ କମ୍ପୀ
ତୋ ବେଦନା ପାରିଲୁ କହି ?

—୪୧—

## ଅନ୍ତିମ ଭାଷଣ —

କ୍ଷଣିକର ଭୁଲ ପ୍ରମାଦ ଶିଖାଛି ଜଳି ଜଳି ।
ଭବିଷ୍ୟ ଆଶା ସୁଖ-କଳପନା ଚିନ୍ତିକି ଫଳ ?
ରହିଥିବାଯାଏ ସେ ତୋର ଗର୍ଭରେ ତଇଲ ଟିକି,
ଗାଇ ଯା ମରିବେ ଜୀବନାନନ୍ଦ ମାଙ୍ଗଳିକ ।
ରବି ଶଶୀ ଗ୍ରହ ଆଲୋକ; ଆଲୋରେ କହ କି ଲାଭ ?
ନ ବଢ଼େ ଆଲୋକ କି ହେବରେ କରି ଘଣ୍ଟାରବ ?
ବିଶାଳ ସୃଷ୍ଟି ଅନ୍ଧାର କୋଣେ ତୁ କ୍ଷୀଣଜୀବୀ
ଅଗଣିତ ଦୀପ ତୋହରି ସମାନ ଗଲେଣି ନିଭି ।
ସସୀମ ସ୍ୱଳ୍ପ ଆଲୋକ ପରିଧି ପଡ଼ିଛି ଗାର,
ତା ପଛେ ହସଇ ମରଣ ସମାନ ଅନ୍ଧକାର ।
ସେଣୁ ଅନ୍ଧାରୁ ଜନମ ତୋହରର ମିଶିବୁ ତହିଁ,
ଜଗତ ଭୁବନ ଆଲୋକ ପ୍ଲାବନ କି ହେବ କହି ?
ଅନ୍ଧାର କାହିଁ ରହିଲା କି ଗଲା ନୁହେଁ ତୋ କାମ,
କ୍ଷଣିକ ଆୟୁସ ଅସ୍ଥିର କିଆଁ ତୋହରି ପ୍ରାଣ ?
କ୍ଷୀଣ ଜୀବନରେ ନିଭିଯିବୁ ଯେବେ ପଡ଼େ କି ମନେ
ଯେତେକାଳ ଅଛୁ ଜଳିଯାଉ ଶିଖା ସଂଗୋପନେ ।



[ ୧୯୩୯-ଜୁଲାଇ ]

## —ଚଉଦ—

ହରିଜନ—

ଦୁଇଦିନ ହେଲା ଜୁଟି ନାହିଁ ଦାନା
ପତାଇଛୁ କେତେ ହାତ,
ମିଳିଅଛି ମୁହଁ ମୋଡ଼ା ନାକ ଟେକା
ମାତର ମିଳିନି ଭାତ ।
ବିଶାଳ ନଗରୀ ପାଟଳିପୁତ୍ର
ଲକ୍ଷୁଁ ଅଧିକ ଜନ,
ମୁଠାଏ ଅନ୍ନ କାଣି କଉଡ଼ିକ
ଲାଗି ସବୁ ଅଭାଜନ ।
କାହା ଭରସାରେ ବଞ୍ଚିବ ସେ ବନ୍ଧୁ—
ଯୋଡ଼ାଏ ଯୋଡ଼ାଏ ପିଲା ?
ଦିଓଟି ବରଷ ଖୁଆଇ ପିଆଇ
ସାରିଛୁ ଯା' ପାଖେ ଥିଲା ।

ଆଗତ ପଜଟେ ଗୃହସ୍ଥ ତା'ର
ମୃଦିଲା ଯୁଗଳ ଆଖି,
ଶୋଥ କାମଳକୁ ଟକସ୍ରା ଯେତେ
ରଙ୍ଗିନ ସେ କଣ୍ଠୁ ବାକ ।
ଚାଲିଗଲା ସୁଖେ—ମାଇପିଠାଏ ସେ—
ଗୁଚ୍ଛ ଘାସ ଲଦି ଶିରେ,
ଅମଡ଼ା ପଥେ ସେ ମାଡ଼ିଚାଲେ ଏକା
ନୟନ ଅଶ୍ରୁ ଝରେ । ୧୦ ।
ତିନଟା ପରଶ ଚାଲନ୍ତି ଠେଲି
କୁକ୍କୁର ଚହୁଁ ହୀନ,
ସୃଷ୍ଟିରେ କବା ପ୍ରୟୋଜନ କାର
କହିବ କେ କେଉଁ ଦିନ ?

ବୈଶାଖ ମାସ ଶୂନ୍ୟ ସରଣୀ
ଦ୍ୱି' ପ୍ରହରଆ ଖରା,
ଚୌଦଗୁଁ ନଆଁ ବରଷଇ !
କୁଆ କୋଇଲି ସ୍ୱପ୍ନ ପରା ?
ଏ କାଳେ କାହାକୁ କହିବ ଦୁଃଖ ?
ପ୍ରାଣୁଁ ଉଠେ ଖାଲି କୋହ,
ଦେଖିଲି ପାର୍ଶ୍ୱେ-ନିଚଳ ସୌଧେ
ଉତ୍ସବ ସମାରୋହ ।

ଗତ ରଜନୀରେ ସରିଛି ବିବାହ,
ଫିକା ଦିଶେ ଯାନସଜା,
ସରି ନଥିବ ତ ସାତ ଦିନ ଯାଏ
ଚର୍ବ୍ୟ ଚୋଷ୍ୟ ମଜା ।
ଡାକିଲା ବଜିଲେ, "ମାଆ ଠାକୁରାଣୀ—
ଶୁଣ ଏ ଗରିବ ଡାକ,
ବଳିଥିବ ତୁମ ଭୋଜନ ପାତ୍ରୁ
କେତେ ତ ଅନ୍ନ ଶାକ ।୨୦।
ଦିଅ ଆଣ୍ଟିକାରେ—ଯା ଥିବ ଭାଗ୍ୟ—
ଅନ୍ନ ତୋରାଣି ପାଣି,
ଜୁଡ଼ାଇ ହିଁସା ! ଯେନ ମୋ ଦଇନ —
ମରୁଛୁଁ ତିନଟା ପ୍ରାଣୀ ।"
ଅଇଁଠା ପତ ବୁହୁଥିଲ ଅବା
ଅଦୂରେ ଶୀର୍ଣ୍ଣ ଶ୍ୱାନ,
ଅନାହୂତ ତିନ ଅତିଥିରେ ଗୃହେଁ
କଲା ବା ଶତ୍ରୁ ଜ୍ଞାନ ।
ଗୁରୁ ଗୃହୁ କରି ତରଜି ଉଠଇ
ମଡ଼ାଇ ନ ଦେବ ପାଖ !
ଯମୁଁ ଯମରୂପ ! ନିରେଖି ସଭୟେ
ଉଡ଼ିଗଲେ ଦେବନ କାକ ।
କନ୍ୟାଟି ତାର ଯାଉଥିଲା ଆଣେ
କି ଅବା ଆଣିବ ଗୁଣି,

ଅଧିକ ଲୋଭରେ "ମରୁ ନାହୁଁ ?" କହ—
କର ଧରେ ମାଆ ଟାଣି ।
ସହସ୍ର ଡାକେ ଆସିଲା ଦାସୀଏ
ଦନ୍ତୀ ପୃଥୁଳକାୟା,
'ଶ୍ରୀବଦନ ହେଲା ବାହାଘର ଶେଷ'
କହେ, "ନଅାଁ ଦେବ ଥାଆ !"
'ଆଜଯାଏ କାହିଁ ଶୋଇଥିଲୁ ? ଆଜ
କାଲକୁ ଭାଜିଲା ନିଦ ?
'ସେ ଦିନ ଥିଲେ ତୁ ଫୋପାଡ଼ ଥାନ୍ତୁ
ଖିଚ ପୁରି ନାନାବିଧ ।
'ଆଜ ଯାଏ ଥିଲା, ବାସି ବୋଲି ଆଜ—
ଢାଳି ଦେଲେ ବାବୁଆଣୀ,
'ମିଠାଇ କାକରା ଧରି ଗଲା ଲାଳ
କଏ ଖାଆନ୍ତା ଜାଣି ।
'ଅସ୍‌କରା (୧) ଟିଣେ ଫୋପାଡ଼ୁଛି ତା ମୁଁ,
ଦେଖିବୁ କି ଥିବ ଅବା ।
'ମେହେନ୍ତର ଗାଡ଼ି ଆସିନ ଏ ଯାଏଁ
କହୁଥିଲା ବୁଢ଼ା ନବା ।
'ଘାରୀକୁ ଚୋର ଥିବ ଯଦି କଣ୍ଟ
କୁକ୍‌କୁର କୁଆ ମୁଖୁଁ;
'ନାହିଁ, ନାହିଁ, କେହି ଯାଇ ନ ଥିବେ ତ
ସେଇ ଟିଣ ଭିତରୁକୁ ।"

(୧) Dust bin

କହିଦେଇ କ୍ଷଣେ ଅନ୍ତର୍ଦ୍ଧାନ !
ଅସ୍‌କର ଝିଣ ଠାର,
ମୁଁ ଥିଲି ଚାହିଁ ଚକଲେ ନୀରବି
ଧୀରେ ଲେଉଟିଲି ଦାସ ।
ହରିଜନ ତାର ସ୍ଥାନ ଅସ୍ଥାନ
କାରଣ ତ ଜାଣେ ନାହିଁ
ବ୍ୟାକୁଳ ନେତେ ଅସ୍‌କର ଝିଣେ
କହେ ଅଛି ଦେଇ ଭୁଇଁ ।
ଭାଗ୍ୟକୁ ତାର ଛୁଇଁ ନାହିଁ କେହି !
ପିଲାଟାଏ ଗଲା ପଶି,
ସାଉଁଟି ଆଣିକା ପୂର୍ଣ୍ଣ କଲା ତା
ନୟନ ଉଠିଲା ହସି ।
"ଦୁଇବେଳା ଯିବ !" ନାହିଁ "ତିନ ବେଳା
ଖାଇଲେ ତା' ରଖି ଥୋଇ"
"ମୋ ଭାଗ ଅଧିକ ! ଆଣିଛି ମୁଁ !"—କହେ
ପୁଅ ଉଲ୍ଲାସ ହୋଇ ।
ଖାଇଲେ ଯେତେକ ଗଛ ମୂଳେ ବସି
ଯାଉଥିଲା ସେହି ସ୍ଥାନ,
ହସ୍ତ କାତରେ ଗୁହାଁଳରୁ ଝିଅ —
ଆନନ୍ଦେ କରେ ଦାନ ।
ଆକଣ୍ଠ ସେହି ଭୋଜନର ଶେଷେ
ଆଶୀର୍ବାଦର ପାଳ,

'ଧନ୍ୟ ବଧାଇ!' "ଜମିଦାର ବାବୁ—
ଜଇ ହଉ !" କହେ ବାଳୀ ।
ବଧାଇର ସେହି ମଙ୍ଗଳ ଗାନେ
କେତେ ବା ଦାସର ଭାଗ ?
ଯେ ଦେଖିଛୁ କହୁ ସୁଷ୍ଟୁ-ଖାଦ୍ୟ—
ଅନ୍ନମ-ଅନୁସଗ ।
ଅନ୍ନମ ସେହି ଭୋଜନେ ତୃପ୍ତି—
ବର୍ଣ୍ଣିବ ? ନାହିଁ ବାଣୀ !
ପ୍ରକଟ ପୂର୍ବୁ ଅନ୍ନମ ନଦେ
ନଷ୍ଟ ତ ତିନ ପ୍ରାଣୀ ।
ମୃତ ପୁଷ୍ଟେ ତନୁ ଜର୍ଜର
ମକ୍ଷିକା ଭଣ ଭଣ,
ସର୍ବ ଉତରେ ହୋଇଛୁ ଯେ କେତେ
ବଦନୁ ଉଦ୍‌ବମନ;
କୁଞ୍ଚିତ ନାସା, ବିକଳ ବଦନ,
ନେତ୍ର କୋଟରଗତ,
ଊର୍ଦ୍ଧ୍ୱେ ଅନାଇଁ ଉଡ଼ି ଯାଇଛୁ ସେ
ପବଣ ସମ୍ଭବତ ।
ସାଙ୍ଗଁଠା ପିଠାରୁ ବାକି ଅଛୁ କେତେ !
ଖାଇବାକୁ ନାହିଁ ପ୍ରାଣ !……
ଭୁଞ୍ଜି କରି ତା ବମନକୁ ଗୃହେ
ସେହି ପରିଚିତ ଶ୍ୱାନ । ୬୦ ।

× × × × ×

ତୀର୍ଥ ଭୂମି ସେ ପଥେ ଯୁଗେ ଯୁଗେ
ଦେବତାର ନିତ ବାସ,
ସେ ପଥେ ଗଲେଣି କେତେ ତଥାଗତ
କେତେ ଯେ ତୁଳସୀ ଦାସ ।
ସବୁ ଦିନ ପରି ଆଜି ସେହି ପଥେ
ଗାଇ ମୁଖେ ରାମ ନାମ,
ପ୍ରଭାତୁ ଚଳେ କେ ଭକ୍ତ ଉଦାର
ସାରିବ ଗଙ୍ଗା ସ୍ନାନ ।
ଦେଖି ଏ ଦୃଶ୍ୟ ବିଭତ୍ସ କ୍ରୂର
ସିତ୍କାର କରି ଉଠେ,
ଅଶୌଚ ଭୟେ ଦ୍ୱିଗୁଣ ବେଗରେ
ରାମ ନାମ ମୁଖୁଁ ଛୁଟେ ।
ଗର୍ଜି ଉଠଇ ବୁଭୁକ୍ଷୁ ଶ୍ୱାନ !
—ଦନ୍ତ ପନ୍ତି ବିକଶି,—
ଜୀବନ ଯଜ୍ଞ ଅନ୍ତିମ-ରସେ
ଆହୁତି ଢାଳଇ କି ସେ ?

---

## —ପନ୍ଦର—

### ପତ୍ନୀତ୍ୱର ପୂର୍ବେ—

(୧)

ନୁହେଁ ମୁହିଁ ଶ୍ରାବଣର ସ୍ନିଗ୍ଧ ବାରିବାହ,
ନୁହେଁ ରୂପ ଅଗ୍ନିଶିଖା ନାହିଁ ମୋର ଦାହ !
ସାମାନ୍ୟା ମାନବୀ ମୁହିଁ; ତୁମେ ଯେହ୍ନେ ନର,
ସ୍ନେହଶୀଳ ସୃଷ୍ଟି ପ୍ରାନ୍ତେ ରଚୁଁ କ୍ଷୁଦ୍ର ଘର—
ଯେସନେ ମିଥୁନ ପକ୍ଷୀ ! ଆମର ସମ୍ପଦ—
ଅଖଣ୍ଡ ଜୀବନ ସୃଷ୍ଟି ଅମର ଆନନ୍ଦ ।
ଅଶ୍ରୁ ପାରିବାରେ ଆମ କୌମୁଦୀ ରଚନା,
ଦୁର୍ଦ୍ଦିନେ ଆଶାର ସ୍ୱଚ୍ଛ ସଙ୍ଗୀତ ମୂର୍ଚ୍ଛନା;—
ତା ଠହୁଁ ଅଧିକ ମୋର ନାହିଁ ବିବ୍ୟଞ୍ଜନ,
ବିଫଳେ କଳ୍ପନା ସ୍ୱପ୍ନ ରଚେ କବି ପ୍ରାଣ ।
ଦୀର୍ଘ ଏଇ ଯାତ୍ରାପଥେ କାବ୍ୟ-ସ୍ୱପ୍ନ-ମାୟା,
ରହେ କେତେ ଦିନ ବନ୍ଧୁ ବାରିବାହ ଛାୟା ?

ମେଣ୍ଟିବ କି ତହିଁ ପ୍ରିୟେ ଜୀବନର କ୍ଷୁଧା ?
କାହିଁ ତୁମ ସ୍ୱର୍ଗଲୋକ ନିତ୍ୟ ରୂପ ସୁଧା ?

(୨)

ଘରେ ବସି ବସି ତେଣୁ ଆସିଲେ ପଉଷ—
ଏ ପୁଷ୍ପ କାନନ ତବ ହେବ ଦଷ-ଦୃଶ,
ଝରିବ କୁସୁମ ଦଳ ସ୍ନିଗ୍ଧ କିଶଳୟ,
ମୃତ୍ୟୁ ନଗ୍ନ ଶୋଭା ଖାଲି ଲାଗେ ମନେ ଭୟ !
ଶୁକ୍ଳ ହେବ କେଶ ଦାମ, ବଦନ ପାଣ୍ଡୁର,
ନୟନ ମାଧୁରୀ ହରିବ ମୋ' କାଳ କ୍ରୂର,—
ସକଳ ରହସ୍ୟ ସ୍ୱପ୍ନ ! ନ ହୁଏ ବିଶ୍ୱାସ ?
ଏ ଅଧର, ଏ ନୟନ, ହେବ ମୁଖଗ୍ରାସ—
ଲକ୍ଷ କୋଟି କୀଟଙ୍କର ! ଶୁଣିବାକୁ ପିଡା ?
ଲେଖି ରଖ ଆଜୁଁ ବନ୍ଧୁ ରୂପର କବିତା ।
ସେ ଦିନ ଶୈଶବ ସମ ଯେବେ ଅସହାୟ,
ଆଜ ଏଇ ଶୁଭ ଲଗ୍ନେ ଯେନ ହେ ବିଦାୟ ।
ପୌରୁଷର ପୂଜା ନିତ୍ୟ ନାରୀ ଆଦରଣ,
ବାସ୍ତବ ସଂଗ୍ରାମେ ତାର ରହେ ରୂପ ଯଶ ।

---

## —ଷୋହଳ—

### ଶହୀଦ୍‌-ବନ୍ଦନା—

ଏ ଜାତି ଯୁଝି ଦୁର୍ଜୟ ହୋଇଥା ସମ
ନମୋ ନମ;
ଆପଣା ଶୋଣିତ ବଳିଦାନେ ଯେତେ କ୍ଷମ
ନମୋ ନମ !
ହସି ହସି ଯେତେ ଚଢ଼ାଇଲେ ଗଳେ ଫାଶି,
ଦଣ୍ଡ ଲାଗି ହେଲେ ଅକାଳେ ସ୍ୱର୍ଗ ବାସୀ,
ଦଧୀଚିଙ୍କ ବଳି ଦେଲେ ଆପଣାର ହାଡ଼,
ଲୁଚାଇଲେ ପିଠି କରି ଲାଞ୍ଛନା ମାଡ଼,
ମିଥ୍ୟା ଗହନେ ସାଧିଗଲେ ଯେ ଧରମ,—
ନମୋ ନମ ! । ୧ ।
ଦେବତାରୁ ବଳି ମାନବକୁ ଦେଲେ ମାନ,
ଜନମରୁ ବଡ଼ ଏ ମାଟିକି କଲେ ଜ୍ଞାନ,
ଧ୍ୱଂସମୁଖେ ଯେ ଉଚ୍ଚେ ଧରିଲେ ଧ୍ୱଜା,
ଅନଳ ସଙ୍ଗତେ ଖେଳ କରିନେଲେ ସଜା,
ଦେବତା ତହୁଁ ସେ ସୁନ୍ଦର ଅନୁପମ—
ନମୋ ନମ ! ।୨।
ରଖିବେ ବୋଲି ଯେ ଆପଣା ଜାତିର ଟେକ ,
ଶୋଣିତରେ କଲେ ନିଜ ବପୁ ଅଭିଷେକ,

ହସି ଫୁତ୍କାରେ ମରଣେ ମାଗିଲେ ରଣ,
ଶୋଷକର ମୁଖେ କଲେ ସେ ନିଷ୍ଠୀବନ,
ସଂଗ୍ରାମେ ଶତ ଶାର୍ଦ୍ଦୂଳ ପରାକ୍ରମ—
ନମୋ ନମ ! । ୩ ।

ଚନ୍ଦନ କଲେ ସଂଗ୍ରାମ କ୍ଷତ ବ୍ୟଥା
ଆହବେ ଢଳେ ଯା ପଡ଼ନାହିଁ ଆଖିପତା,
ରଣ ନିର୍ଘୋଷେ ତନୁ ସଦା ପୁଲକିତ,
ସ୍ଫୁରିତ କଣ୍ଠେ ମୈତ୍ରୀ ସାମ୍ୟ ଗୀତ,
ହିମଗିରି ତଳୁଁ ଶିର ସେ ଉଚ୍ଚତମ,—
ନମୋ ନମ ! ୪ ।

ଜନନୀର ଜୟ ଜନ୍ମଭୂମିର ଜୟ,
ବକ୍ଷ ଫୁଲାଇ ଗାଇଲେ 'ନାହିଁରେ ଭୟ !'
କୋଟି କଙ୍କାଳ ଧ୍ୱଜାତଳେ ସମବେତ,
"ଜୟ ଜୟ" ଗାନେ କ୍ଷିପ୍ର ଯେସନେ ପ୍ରେତ,
ତ୍ରସ୍ତ ବାସୁକୀ କମ୍ପିତ ହେଲା ଯମ,—
ନମୋ ନମ ! । ୫ ।

ମରନାହିଁ ସେ ତ ମରନାହିଁ ତାର ପ୍ରାଣ,
ଭସ୍ମଗଦାରୁ ଜାଗେ କୋଟି ଭଗବାନ,
ଶୁଭ୍ର ପଦ୍ମ ନବୀନ ଉଷାରେ ଜାଗେ,
ହସଇ ଜୀବନ ପୀରତି-ଅରୁଣ-ରାଗେ,
ଗାଏ ବନ୍ଦନେ ନମ୍ରିତ ନିଃସ୍ୱ ଜନ,—
ନମୋ ନମ, ନମୋ ନମ, ନମୋ ନମ ! । ୬ ।

---

## — ସତର —

### ରାଷ୍ଟ୍ର-ରହସ୍ୟ—

ଭଗବାନ ଅବା ସଇତାନ କେହ୍ନ ନାହିଁ
ଯେତେ ଯା' ଦେଖୁନ୍ତୁ ମଣିଷ କରଣୀ ଖାଇ,
ଖିଆଲି ମଣିଷ ରାଷ୍ଟ୍ର ଗଢ଼ଇ ବସି,
ତୋପ କମାଣରେ ଖିଆଲେ ଯାଏ ସେ ଧସି । ୧ ।

ତର୍ଜମା ଆଗେ ଘୂରଏ ଭୂମଣ୍ଡଳ,
ଅମୃତ ନାମେ ପରଶଇ ହଳାହଳ,
ଗିରିଧର ହରି ବୁଦ୍ଧିକି ଦେଖି କାବା,
ବ୍ରହ୍ମା ବକଳେ ନରେଖି ଡାକନ୍ତୁ ବାବା । ୨ ।

ମଣିଷ ବନେରେ ତୋହରି ରାଷ୍ଟ୍ରପତି,
ଅଦ୍ଭୁତ ତାର ବକ୍ସର ପଞ୍ଜାପୁତି;
ବଣି ପୋଷିବାକୁ କୋଟି ହିଣ୍ଡିକା ମାରେ;
କାଠ ଚଢ଼ୁଁ ସ୍ନାନ କୋଟି ମଣିଷକୁ ଖାଲେ । ୩ ।

କେବେ ସେ (1)ଦ୍ୱିମୁଖ, କେବେ ରେ (2)ଚତୁର୍ମୁଖ,
ଭାଗ୍ୟ ବିଧାତା ରଚେ ତୋ ଦୁଃଖ ସୁଖ,
ଜୀବନ୍ତ ତୋର ଭଗବାନ ଥାଉଁ ଥାଉଁ,
ମୂର୍ଖ ପାଷାଣ-ମନ୍ଦିରେ କିଆଁ ଯାଉ ? । ୪ ।

ମୁକ୍ତ ମାନବର ଧରେ ସେ ଭାଗ୍ୟରୂପ
ଘାଟି ପିଟାଇଲେ କମାଣରେ ବିଏ ଦାବ;
ରାଷ୍ଟ୍ର-ଯନ୍ତ୍ର ଚଳାଏ ସେ ଭଗବାନ
ବିପ୍ଳବେ ତୋର ଧାତାର ଧରଇ କାନ । ୫ ।

ଯୁଗ ଯୁଗ ଧରି ତାହାରି ହାତେ ତୋ ପଞ୍ଜି,
ଇଙ୍ଗିତେ ତାର ଅନାହାରେ ମରୁ ସଡ଼ି;
(3)ଦୁରଭିକ୍ଷେ ସେ ଖେଳଜାଣେ କେତେ ଖେଳ,
ମରୁ ତୁ, ତେଲିଆ ମୁଣ୍ଡେ ଢାଳେ ସେ ତେଲ । ୬ ।

ଏ ବର୍ଷର କଥ ଦେଖିଥିଲୁ ଅବା କାହିଁ ?
କୋଟି କଙ୍କାଳେ ଦେଶଯାକ ଗଲା ଛାଇ;
ନ ମିଳିଲା ଯହିଁ ମଣିଷକୁ ପେଜସର
(3)କୁକ୍କୁରେ ଚଢ଼ୁଁ ଭୋଜନ ଅରୁଚିକର । ୭ ।

1 . ୧୯୧୪-୧୮ ପ୍ରଥମ ପୃଥିବୀ ମହାଯୁଦ୍ଧ ପରର ଭାଗ୍ୟ ବିଧାତା Wilson & Lloyed George.

2 . ଗତ ୧୯୩୯-୪୫ ୨ୟ ମହାସମର ସମୟର ଭାଗ୍ୟବିଧି Roosevelt, Churchill, Chiang Kaisekh, Stalin.

3 . ଗତ ଯୁଦ୍ଧ ସମୟରେ ବଙ୍ଗୋତ୍କଳ ଦୁର୍ଭିକ୍ଷ ଓ କଳାବଜାରକୁ ଲକ୍ଷ୍ୟ କରା ହୋଇଛି ।

ଯନ୍ତ୍ରଯନ୍ତ ତୋ, ଭଗବାନ ତହୁଁ ବଡ଼,
ଦୃଷ୍ଟିରେ ତାର ତୁଚ୍ଛ ଜଡ଼ ଅବା ମଡ଼;
ଅଶ୍ୱ ଉଷ୍ଟ୍ର ଗର୍ଦ୍ଦଭ ଅବା କସି
ଶାସଇ ଯନ୍ତ୍ର ତୋହର ଉପରେ ଚଢ଼ି ।୮।

ମୂକ- ଙ୍କରୁଢ଼ ତୋ ପୃଷ୍ଠର ଭଗବାନ
ଫୁଙ୍କେ ତୋ କାନେ ଯନ୍ତ୍ର-ଭକ୍ତ-ନାମ;
ନ ମାନିଲେ ବୋଲ (4)ପରମାଣୁ-ବୋମାଠାରେ
ହନସୁ ଭକତ ଶହେଗୁଣ କରି ମାରେ ।୯।

ମଣିଷର ଏ ତ ବୁଦ୍ଧିର କାରସାଦ
ଭଗବାନ କଏ କଆଁ ହେବ ପ୍ରତିବାଦୀ ?
ଯନ୍ତ୍ର ଯନ୍ତ୍ର ପଡ଼ିଗଲେ ତୋର ହାତେ
ଭାଗ୍ୟ ବିଧାତା ହଟିବେ ଏକଇ ନାତେ ।୧୦।



4. Atom Bomb.

—ଅଠର—

ଗଣବନ୍ଧୁ-ଗାନ୍ଧି —

—୧—

ଧନ୍ୟ ଯେ ଜୀବନେ ରଖେ ଆଦରଣ ଟାଣ,
ଆଦରଣ ସତ୍ୟ ଲାଗି କରେ ଆତ୍ମଦାନ,
ମିଥ୍ୟା ସୂତ୍ର-କାଠେ ବଏ ମଙ୍ଗଳ ପତାଇ,
ଆଗେ ମଣି ଅବିଦ୍ୟାକୁ ଯାଏ ସେ ଚେତାଇ,
ଅନ୍ଧାରେ ନ ଦେଇ ଧରା ସତ୍ୟେ ସଦା ଧ୍ୟାନ,
ଜୀବନକୁ ବଳି ଆତ୍ମ-ବିଶ୍ୱାସ ମହାନ,
ମଣି ସେ ଜାଳଇ କୋଟି ଜୀବନ ବର୍ତ୍ତିକା,
ତା ପରଶେ ଧନ୍ୟ ଜଡ଼-ଆକାଶ-ମୃତ୍ତିକା ।
ଯୁଗେ ଯୁଗେ ଯେତେ ଯେନା ବୀର ମହର୍ଷି,
ଗରଳକୁ ଭକ୍ଷି ଗଲେ ଅମୃତ ପରଶି,

ଏ ଧରା କାଳିମା ପୋଛୁ କଲେ ଯେ ସୁନ୍ଦର,
ଅମୃତ ଦାୟାଦ ତୁମେ ଯୋଦ୍ଧୃ-ବଂଶଧର
ସୁପ୍ତ ଭୂ-ଭାରତ କୋଟି କଣ୍ଠେ ଉଠେ ନାଦ,
ଜୀବନେ ବିଜୟୀ ଗାନ୍ଧି ମରଣେ ସେ ଗାନ୍ଧି ।

—୨—

ସୁବିପୁଳ ବନସ୍ପତି ପଡ଼ିଲ ଯେ ଟଳି !
ତଳେ ନାହିଁ ପ୍ରତିବାଦ ମୂକ ଶିଶୁଭଳି,
ଅବା ତୃଷ୍ଣୀ ଗିରିଶୃଙ୍ଗ ! ଶାନ୍ତ-ପରିପ୍ଳୁତ ।
ମରଣେ ବରିଲ ହସି ଯେସନେ ଅମୃତ,
ସ୍ଥିତ-ପ୍ରାଜ୍ଞ, ଅବିଚଳ, ଆଦର୍ଶ ପୂଜାରୀ !
ବରିଲ ସହଜ-ମୃତ୍ୟୁ ଦଣ୍ଡେ ନ ବିସ୍ମରି—
ତୁମରି ଆଶ୍ରିତ ପକ୍ଷୀ-ଶାବକଙ୍କ ଭାଗ୍ୟ,
ଯା ଉନ୍ନତି ସୁଖକରି ସର୍ବ କଲ ତ୍ୟାଗ,
ଅପୁଷ୍ଟ ସେ ଶିଶୁ ! ଶିଖୁନାହାନ୍ତି ଖଣ୍ଡିଉଡ଼ା,
କାହା ଭରସାରେ ତାଙ୍କୁ କଲ ଘରବୁଡ଼ା ?
ପତିତ ନିରନ୍ନ କୋଟି କଙ୍କାଳଙ୍କ ବ୍ୟଥା
କେ ବୁଝିବ ? କହିବ କେ ଟେକିବାକୁ ମଥା ?
ଶିଶୁ-ରାଷ୍ଟ୍ରପିଣ୍ଡେ ଲକ୍ଷଗୁଳି ହେଲା ଲକ୍ଷ
ଲୁହ କେ ପୋଛିବ ? ସୂକ୍ଷ୍ମ, ମୁକ୍ତ-ସବ୍ୟସାଚୀ !

—୩—

ଶିଶୁରାଷ୍ଟ୍ର-କର୍ଣ୍ଣଧାର ! କହ ଶେଷ ବାଣୀ—
ଅର୍ଦ୍ଧପଥେ ଆଜ ତୁମେ ନେଲ ଯେ ମେଲାଣି
ପହଞ୍ଚିବ ଲକ୍ଷ୍ୟସ୍ଥଳେ କ୍ଷୁଦ୍ର ପୋତ କିଏ ?

ପଥେ ଶତ ଦୁର୍ବିପାକ, ସହସ୍ର ଭେଳକ
ହେବଟି ଉତ୍ତୀର୍ଣ୍ଣ ? ପିଶ୍ୱଜତ ପରିପନ୍ଥୀ ?
ଲବ୍ଧ ହେବ ପୋତାଶ୍ରୟ ? ଉଡ଼ିବଟି ଛତ୍ର !
ପର୍ବତ ଆକାର କୋଟି ତରଙ୍ଗକୁ କାଟି ?
ଦୁର୍ଦ୍ଦିନର ଘୂର୍ଣ୍ଣୀବାତ୍ୟା ଆବର୍ତ୍ତନ ଛୁଟି,
ହେବ ଅଗ୍ରସର ରଖି ମୁକ୍ତି-ନେତ ଟେକ ?
ଉଦ୍‌ବୁଦ୍ଧ କରିବ କିଏ ଏ ଜାତି ବିବେକ ?
ଶତ-ଗୋଷ୍ଠୀ, ଲକ୍ଷ-ମତ କରି ଏକାକାର,
ଗଣ ଦେବତାରେ କିଏ ଦେବଟି ହକାର ?
ଚେତନ ଦେବତା ଛତ୍ରି ରଖିବ ସଂପାଦ,
ଜାଗେ ଶଙ୍କା; ଛକି ରହେଁ ଲୁବ୍ଧ ପ୍ରତିବାଦୀ ।

—୪—

ଗୀତା ଧର୍ମୀ ଥୋଇ ବନ୍ଦ ତୁମ ବ୍ରହ୍ମଜ୍ଞାନ,
ହୃତ୍‌ପିଣ୍ଡେ ବସିଛି ଗୁଳି ଭଗ୍ନ ଜାତି ଟାଣ !
କେ ଶୁଣିବ ଏତେବେଳେ ଜ୍ଞାନଗର୍ଭ ବାଣୀ,—
"ନଷ୍ଟ ଗତ ଆୟୁ ଲାଗି ନ ଶୋଚ ତୁ ପ୍ରାଣୀ ?"
ସର୍ବ ଅଙ୍ଗେ ଦାବ ଦାହ କରଇ ଅଧୀର,
ଗୁଳିଘାଟେ ହୃଦପିଣ୍ଡୁ ଝରଇ ରୁଧିର,
ଏତେବେଳେ ନ କଲେ ମୁଁ ଅଶ୍ରୁ ବରଷଣ,
ଅପ୍ରମାଣ ହେବ ସିନା ଜୀବନ ଧାରଣ ?
ବିପଶ୍ଚିତ ଜୀବଧର୍ମୀ ଅଦ୍ଭୁତ ବରଷ,
ଛତ୍ରର, ଜାତିକ କଲ ସ୍ୱାନ ଆଦରଣ,

କଲ କ୍ଳୀବ କୁବ୍ଜକଟି ପଳାତକ ପନ୍ଥୀ
ଶିଖାଇଲ ହସି ପଛେ କାଟିବାର ଗ୍ରନ୍ଥି ।
ମିଳିଛୁ ଜାତକ ଆଜ ଗୀତା ଧର୍ମ ଫଳ
ରଖି କଉଶଳ ଢାଲ ଯେତେ ଅଶ୍ରୁଜଳ ।

—୪—

ଭସ୍ମ କରଦେଲେ ରଜ୍ଜୁ ତପକ୍ଳାନ୍ତ ଦେହ,
ବୁଝିଛୁ ଶାଶ୍ୱତ ମନ୍ତ୍ରପୂତ ଗଣ-ସ୍ନେହ—
ହେବ ଅଗ୍ନିମନ୍ତ୍ର; କଥା ରହିବ କାଳକୁ;
ଜୁହାରିବେ ନୋଇଁ ମଥା ପ୍ରୀତି ମଶାଲକୁ—
ବିଶ୍ୱ ନିଃସ୍ୱଜନେ, ମାଝ ଊଷୁଜେ ସନ୍ଦେହ,—
ଯାହାଲାଗି, ଯେବା ଲକ୍ଷ୍ୟ ପାତକଲ ଦେହ,
ରଖିବେ ମର୍ଯ୍ୟାଦା ଠିକ ? ଯିବେ ସେହି ବାଟେ ?
ଅବା ଶେଷ ସବୁ ଗ୍ରନ୍ଥ-ଧ୍ୱନି ଗୀତା ପାଠେ ?
ଚିହ୍ନରି-ଗ୍ରାହକ ଛପିଥିଲ ଜାତି ନାଡ଼,
ଚହ୍ଲିଥିବ ଜାତି-ବେଗ ମାରିମୂକ ଘର ;
ଶୈଳ ଆବେଦନ ପର୍ବ ଏବେ ସୁଝା ବାକି,
ସଲ୍ତ ଜଳେ ଘଡ଼ିଆଳ ନକ୍ର ଅଛି ଠାକି ।
ତୁମର ଶାଶ୍ୱତ-ପ୍ରୀତି ହେଉ ଜାତି ଲଭ୍ୟ,
ପଣ୍ୟ ଦ୍ରବ୍ୟ ନୋହୁ ନାମ, ନୋହୁ ଶୁଷ୍କ ଗର୍ବ ।

—୭—

ହେ ମହାମାନବ ! ଘେନ ଶେଷ ନମସ୍କାର,
ତୁମ ଚିତାଗ୍ନିରେ ଜଳୁ ସହସ୍ର ବିକାର—

ବିପନ୍ନ ଜାତିର ଶତ ସ୍ୱାର୍ଥ-ସଂଘର୍ଷିତା
ସାରହେଉ ଅନାବିଳ ସେ ପ୍ରୀତି ମମତା ।
ଯେଉଁ ସେବା ମନ୍ତ୍ର ଯେନ ଲଭିଲ ଜନମ,
ଆଜୀବନ କଲ ଯା’କୁ ବରିଷ୍ଠ ଧରମ,
ଯେ ମନ୍ତ୍ର ବିଜୟ ଲାଗି ଦେଲ ପ୍ରାଣାହୁତି,
ଅଟଳ ଦୁର୍ଜୟ ବୀର ନିଷ୍ଠା ପ୍ରତି-ମୂର୍ତ୍ତି ?
ସାର୍ଥ ହେଉ ଶ୍ରେଷ୍ଠ ମନ୍ତ୍ର ଏ ଜାତି ଜୀବନେ,
ଲକ୍ଷ ଗାନ୍ଧୀ ଜାଗି ଉଠୁ ଆଜ ସନ୍ଧିକ୍ଷଣେ,
ଗଣପୂଜା, ଗଣସେବା, ଗଣର ମଙ୍ଗଳ,
ସାର ତତ୍ତ୍ୱ ହେଉ ! ପୋଡ଼ୁ ଅଶିବ-ଗରଳ !
ଉତ୍ସେ ଫୁଟୁ କୋଟି ଶୁଭ୍ର-ପ୍ରାଣ-ଶତଦଳ
ଆଲୋକର ଆଶୀର୍ବାଦେ ଶମୁ ଚିତାନଳ ।

---

—ଊଣିଶ—

ଖେଳାଉଛନ୍ତି କାଳୀୟ ନାଗ—

ଖେଳାଉଛନ୍ତି କାଳୀୟ ନାଗ (୧)
ଖଳକାର (୨) କଉଶଳୀରେ,
ଅଚରକେ ବାଜବ ଶ୍ରେଷ୍ଠ
ବିଷରଦ ଯିବ ଗଳାରେ ॥

ବୁଦ୍ଧି ଚୋର ନଗୁଡ଼ ଚାଜା,
ଦୁନିଆରେ ବଜାଇ ବାଜା,
ଗିଳାଉଛନ୍ତି ଫନ୍ଦ ଫିକରେ
ଥୋପ କେତେ ନାନା ଭଳରେ ।
ଖଳକାର କଉଶଳୀରେ । ୧ ।

ଚଦ୍ଦୁ ଚୋଳା ବୋଲ ଭୁ ଷର;
ଲାଭ ଯେତେ ନେଉଛନ୍ତି ମାର,
ଠାର ନେଳ ଯୁଗଳ ପ୍ରାନ୍ତେ
ମାରୁ ପ୍ରାଣେ କେତେ ଛଳରେ ।
ଖଳକାର କଉଶଳୀରେ । ୨ ।

ଶିବ (୩) ଯିନା ଜାଣଇ ବାଗ,
ଖେଳାଇବ କାଳୀୟ ନାଗ,
ପାଇଯିବ ଦୁନିଆ ଭସ
କୋଟି-ପ୍ରାଣ-ଦୁଃଖ ଦଳରେ ।
ଖଳକାର କଉଶଳୀରେ । ୩ ।
ଆତ୍ମସୁଖେ ଭୁ ଚରଅନ୍ଧ,
ଅନ୍ତ ତୁଚ୍ଛ ତୋର ଆନନ୍ଦ;
ଶିବ ବୋଲ ଫୁନ୍ଦୁଣା ହେଉ
ଝୁହୁଁ ଝୁହୁଁ ଯିବୁ ଜଳରେ ।
ଖଳକାର କଉଶଳୀରେ ।୪।

ବାସୁକୀ (୧) ସେ ନାହିଁକି ଜଣା ?
ସୁପ୍ତ ତାର ସହସ୍ର ଫଣା,
ଧୂଆଁ ହେବ ଶୃଙ୍ଖଳ ବୁଦ୍ଧି
ଗୁହିଁଲେ ସେ ନେତ୍ର ମଳରେ ।
ଖଳକାର କଉଶଳୀରେ । ୫ ।

୨୮ । ୩ । ୧୯୪୭

---

ନୋଟ୍—(୧) ଗଣବା Greecian Demos (୨) ସୂତ୍ରଧାରୀ ବା ଜନନାୟକ, (୩) ତ୍ୟାଗବୀର ବା Poet Philosopher.

—କୋଡ଼ିଏ—

## ଅଗଷ୍ଟ ବିପ୍ଳବ—

(ଐକ୍ୟତାନ)

ଦୁଃଖ କଷଣ ଜାଗ ବରିବା,
ଉଚ୍ଛେ ଟେକେ ଏ ଧ୍ୱଜା ଧରିବା
ଆସ ସବୁ ସଙ୍ଗ୍ରାମ-ସାଥିରେ—
ଏ ଗଗନ ଆମ ଗୀତରେ ଭରିବା ! । ୧ ।

ଆମେ ଶରତର ସ୍ୱପ୍ନା ପଥରେ,
ଅଚଳ ଅଟଳ ପରବତରେ,
ଆଗାମୀ ଉଷାର ବାଣୀ ବାହକ
ସଞ୍ଚାରୁଁ ବିଜୁଳି ଚମକରେ ! ।୨।

ନବଯୁଗ ସାକ୍ଷୀ ତ୍ରିଶୂଳରେ,
ହାଣ, ଛିନ୍ଦି ଶଠତା କରବାଳରେ,
କୋଟି, ପିଷ୍ଟଦଳିତ ସାଥି-ସଜନ,
ଚଲ, ପାଦେ ଦଳି ଶତଛିପଖାଲରେ । ।୩।

ସବୁଦିନ ଯାଏ କରେ ସମାନ ?
କେତେ ଆଉ ଡରାଇବ କମାଣ ?
ଲୌହ କପାଟ ଆପେ ଫିଟିବ,
ସେ ଉଷା ଆଲୋକେ ପ୍ରାଣ ଭରଣ । ।୪।

ମେଘ ଅନ୍ଧାର ଯିବ କଟିରେ,
କଟିଯିବ ରକ୍ତ ଛୋ କଟିରେ,
ଖସିବ ଛୋ କରୁ ଲୁହା ଶିକୁଳ
ଛୋର, ବଜସ୍ରୁ ଉଠିବ ଧସ୍ ରଟିଛେ । ।୫।

ଦୁନଆର ବ୍ୟଥିତ ମୋ ସାଥିରେ,
ଦମ୍ଭ ତୁ ଧରଥିବୁ ଛାତିରେ,
ଆସ ତୁ ନଃସ୍ୱ ପାଶେ ଆଜକ,
ସ୍ବାଦ୍ଧାଁ ନବ ଉଷା ! ପାଦ୍ରେ ସ୍ତଭରେ । ।୬।

ରକ୍ତକରବୀ ଜବା ଫୁଟିବ,
କୋଟି କଣ୍ଠ ଗୀତ ଛୁଟିବ,
ମୈତ୍ରୀ ସାମ୍ୟ ମହାବାଣୀରେ
ଶୃଣି ମଡ଼ ଶମଶାନୁ ଉଠିବ । ।୭।

ଲଗି ଆସ ପାଣେ ଭାଇ ଲଗିରେ,
ସତ୍ୟ ନିଷ୍ଠା ଅନୁରାଗୀରେ
ଅଶ୍ରୁ ସାଗରେ ଉଷା ଦଶଇ—
ନବ, ଜୀବନ-ପଦ୍ମ ଉଠେ ଜାଗିରେ । ।୮।

ଯକ୍ଷୁଟଗୋଳ, ୬ । ୮ । ୪୯

———

## —ଏକୋଇଶ—

ବୁଲ୍‌କୁଣ୍ଡୀ—

"କି କଲ ବାବା ତୁମେ ?"— କହୁଛନ୍ତି ଆସି କନ୍ୟା,
କନିଷ୍ଠ ପୁତ୍ର ବେନ ନୟନୁ ଅଶ୍ରୁ ବନ୍ୟା;
ତା ବୟୋଜ୍ୟେଷ୍ଠ ପୁଣି ଚିଜର କଟର କାନ୍ଧ,--
"ଦୁଇଟା ମେଢେନ୍ତର କୁଞ୍ଚ କି ନେଲେ ବାନ୍ଧି ।
ବାରଣ କଲେ ନାହିଁ ? ରହିଲ ମୂକ ପରି ?
ଗଳାଇ ଗଲେ ତାର(୧) ନେଲେ ସେ ଯମ ଧରି ।
ଶୃଙ୍ଗରେ ବିଷ ଫୋଡ଼(୨) ଆଜ କରିବେ ଶେଷ
ସହି ପାରିଲ ନାହିଁ ଛଅଟା ଛୁଆ କ୍ଳେଶ !
ଜନମ କରିବାର ଦୋଇନ ଦେଉ ପକ୍ଷ,
ଆଖି ଫିଟିଛୁ ଏବେ କରିନ ତଳେ ଲକ୍ଷ ।୧୦।
କିଏ ପାଳିବ ତାଙ୍କୁ ? ଦେବ କେ କ୍ଷୀର କଲେ ?
ଗୋଟାକ ଲାଗି ପିଲା ଛଅଟା ପ୍ରାଣୀ ମଲେ !"
କହୁଛି ସର୍ବଜ୍ୟେଷ୍ଠ "ଘଟରେ ଆଜ ଜାଣ—
ଛଅଟା ବୋବାଳିରେ ଫଟାଇ ଦେବେ କାନ !
ସହି ପାରିବ କିଏ ବକଳ ତାଙ୍କ ରଡ଼ ?
ମରିବେ ଛଅ ପ୍ରାଣୀ ପଥ ଘାଟରେ ପଡ଼ି ।"

କହିଲ ନିର୍ବିକାରେ
କା'ଶୁଳ ତାର-ପାଶେ
ମଣିଷ ଗଳାଉଛି
ପଡ଼ୁଛି କୋଟି ମୂକ—
ନଚାଇ ମରୁଥିଲା
ହଗଗେ ପଟାଇଲା
ଲଭିବ ପୁରସ୍କାର
ବୁଲା କୁଣ୍ଡର ରଡ଼
ମଣିଷ ପିଲା ଲାଗି
ଜନମ କଲା କଆଁ
ଶୃଗାଳ ଏଥି ମଧ୍ୟେ
ଛୁଅଟି ସେ ବଧିରେ
ଘାଷନ୍ତି ମାତା କରି
"ବୟସ ବୃଦ୍ଧି ହଟରେ
ତା ସଙ୍ଗେ ପୁଣି ବୁଦ୍ଧି—
କୁଷ୍ଠ ଉପରେ ଯେତେ
ଦଶ ବାର ପ୍ରାଣୀଙ୍କ
ଲାଜ ନ ଲାଗେ ତିଳେ
ତୁମ ସନ୍ତାନ—ମାତା ବେକେ
ବୁଝନ୍ତ ଛ'ଛଅଟା
ଏଭଳି ଥାନ୍ତି ପୁଣି
ଆପଣା ସ୍ୱାର୍ଥ ଛାଡ଼ି

"କୁଣ୍ଡଟା ଲାଗି ଶୋକ !
ମରନ୍ତି କେତେ ଲୋକ ?
ମଣିଷ ବେକେ ତାର,
କାଳୁଡି ଜାକେ କାର ?
କୁଣ୍ଡଟା ଶହେ ଥର
ବୁଝନ୍ତୁ ମେହେନ୍ତର ।
ପଇସା ଆଠଅଣା
ଦୁଃଖରେ ପୁଣି ଗଣା ?
ମିଳେନ ସର୍ବ ଥାନ
ଆଠଟା ମହା ପ୍ରାଣ ?
ଦଓଟି କଲା ଶେଷ,
ଭୁଲିବେ ସ୍ୱର୍ଗେ କ୍ଳେଶ !"
ବଦନ ବ୍ୟାଦ ନ,
ଲାଜ ଅପମାନ ।
ବୃତ୍ତି ଯାଏ ହଜି,
ପୌରୁଷ ମରଜି !
ହୋଇଣ ଜନକ
ଆହେ ଧର୍ମ ବକ ?
ଲାଗିଲେ ତାର—
ମୂକଙ୍କ ନାରଖାର ।
ଲୁହାର ମଣିଷ,
ଲାଗେ ସବୁ ହସ !"

× × ×

ମୋ 'ଲୁହାମଣିଷ' ସେ  
ଜଡ଼ ସ୍ତମ୍ଭୀଭୂତ,  
ଛୁଟଇ ଅଗ୍ନି ! ନେତ୍ର-  
ଲୋତକ ଶିଳୀଭୂତ ।୪୦।  
କଶାଘାତ କରେ କେ  
ନିତମ୍ବେ, ଜାନୁ ଜଙ୍ଘେ,  
ଶତ୍ରୁର ଅପେକ୍ଷାରେ  
ମୁଁ ଅପରାଧୀ ସଙ୍ଗେ ।  
ଘୁର ସେ ବନ୍ଧ କୁଣ୍ଡ  
ଅବା ବଧ୍ୟ-ଜନମ !  
କଙ୍କାଳ ହାଡ଼ କଳ-  
ଟନାରେ ନୁହେ ଗଣି ।  
ଛୁଟିଆସି କନିଷ୍ଠ  
କହଇ ଏ କାଳେ,—  
"ସେ ସାହରୁ ନେଲେଣି  
ପୁଣି କୁକୁର ମାଳେ ।  
ଶୃଙ୍ଖଳ ଗାଡ଼ିରେ (୩)  
କେଜାଣି ଛୁଟେ ସେ ଗଲେ,  
ଛୁଡ଼ ଦଅନ୍ତେ ଡରେ,  
ନହେଲେ ପିଲା ମଲେ ।  
ଯାଅନା ବାବା ହେବ  
ଶୁରଣା ହାତଗୁଞ୍ଜା,  
ଏତେଡ଼ ନିଷ୍ଠୁର ତୁମେ ?  
ଏତିକି ନୁହେ ବୁଝା ?" ।୫୦।

× × × ×

ନ୍ୟାଏ ବୁଝା ଶିଶୁ  
ନର ବା କୁକ୍କୁର,  
ନିଖିଳ-ସୃଷ୍ଟି ଶ୍ୱାନ-  
କଳ୍ପନା କରେ ଦୂର ।

---

(୧) ମୁନିସିପାଲିଟି କୁକୁରମରା ଦଳ ଖଣ୍ଡେ ବାଉଁଶ ଠେଙ୍ଗାରେ ତାରଖଣ୍ଡାଏ ବାନ୍ଧି ଫାଶ କରିଥାନ୍ତି । ଆକ୍ରମଣ କଲାବେଳେ ଦୂରରୁ କୁକ୍କୁର ଗଳାରେ ତାରଫାଶଟା ଗଳାଇ ଟାଣି ଦିଅନ୍ତି । ତତ୍ପରେ ଅନନ୍ୟୋପାୟ ଜନ୍ତୁ ସହଜରେ ଗାଡ଼ି ଭିତରେ ପ୍ରବେଶ ଲାଭକରେ ।

(୨) ସାଧାରଣଙ୍କର ଧାରଣା, Injection ଦ୍ୱାରା କୁକ୍କୁର ମରାଯାଇ ଥାଏ ।

(୩) କୁକ୍କୁର ମରା ଗାଡ଼ିର ଘର୍ଘର ଶବ୍ଦ ଅନେକ ଦୂରକୁ ଶୁଣାଯାଇ ଥାଏ ।

ପରମ ଅପରାଧୀ ସମାନ
କହେଁ,............
"ପିବାର ପ୍ରାଣୀ
ସେ ଛଅଟିଙ୍କି ନଅ
ଆଣୂଁ ଏ ବଂଶ ଭୁମେ

ଆମ୍ଭା କାବୁ,

ନଫେରେ ଆଜ ବାବୁ !
ଖନ୍ଦାରେ (୪) ମିଶାଇ,
ଷୋଳ ଭଉଣୀ ଘଇ ।"

ପୁଷ
[୧୯୫୩]

—:*:—

(୪) ଗୋଷ୍ଠୀରନ୍ଧନ ବା Common mess ବୃହତ୍ ପରିବାରର ଏକ ବଶିଷ୍ଟ ଅବଦାନ ।

## —ବାଇଶ—

### ବିଲ୍ୱମଙ୍ଗଳ—

(ଅନ୍ଧହେବା ପର ଅନୁଭୂତି )

—୧—

ଜୀବନେ ସଜନ ତୋ (୧) ଅମୃତ ପ୍ରୀତି ଗୃଷି
ଧରଣୀ ଗ୍ରାସିବାକୁ ବାଢ଼ିଲିଲ ଲୁବ୍‌ଧ ଆଖି ।
ଅବାଧ ଫଣି ପ୍ରାସ୍ୱେ ଭ୍ରମିଲି ଏଣେ ତେଣେ,
ତୋ ପ୍ରୀତି-ଅପମାନ ସହିବ ତୁ ଅନ୍ତ୍ରା କେମନ୍ତେ ?
ଶୋଚନା ନ କରିବୁ !- ମୁଁ ନୁହେଁ ଅନୁତପ୍ତ—
ଆତ୍ମାକୁ କେତେ ଆଉ କରନ୍ତି ଅଭିଶପ୍ତ ?
ବଶଇ ବିକଳାଙ୍ଗ ? ଅଶେଷ ଯନ୍ତ୍ରଣା ?—
ଆତ୍ମକୃତ ପାପର କାନ୍ଦି ଅବା କ୍ଷମା ?—
ଫୁଟାଇ ଦେଲି ହାତେ, (୨) ରୂପେ ବୋଳିଲି କାଳି !—
ଝରିବା ପୁଷ୍ପେ ବୃଥା ହେବାର ନିଜ ଗ୍ଲାନି !—

---

ଟିପ୍‌ପଣୀ :—(୧) ବିଲ୍ୱମଙ୍ଗଳଙ୍କର ପରକୀୟା, "ଚିନ୍ତାମଣି ବା ଚିନ୍ତା"
(୨) ଦୀକ୍ଷାଗ୍ରହଣ ପରେ ମଧ୍ୟ ବିଲ୍ୱମଙ୍ଗଳଙ୍କର ଆତ୍ମଶୁଦ୍ଧି ହୋଇ ନ ଥିଲା । ତେଣୁ ସେ ଶ୍ରେଷ୍ଠୀ ପତ୍ନୀର କ୍ଷଣମାତ୍ର ଦର୍ଶନରେ ରୂପଲୁବ୍‌ଧ ହୋଇ ପଶ୍ଚାତ୍-ଧାବନ କରି ଆଧ୍ୟାତ୍ମିକତାର ପ୍ରାପ୍ୟ ଅସୁଲ କରିବାକୁ ଯାଉଥିଲେ । ସମ୍ଭବତଃ କଳ୍ପଲୋକର ଆଦର୍ଶ-ଚିନ୍ତାମଣି ତାଙ୍କୁ ରକ୍ଷା କରି ଚକ୍ଷୂତ୍ପାଟନ ରୂପ ପ୍ରାୟଶ୍ଚିତ୍ତ କରାଇଲେ । ଏ ରୂପ କବିକଳ୍ପନା ଯଥାଯୋଗ୍ୟ ।

ଫିକା ପଡ଼ିବ ରୂପ, ଭସ୍ମ ହେବ ଦେହ,
ବିକଟ ଦନ୍ତ ଗୁଡ଼ି ଝଟ ଗଦାରେ ସ୍ନେହ ?—
ଏ ନିଜ କଲି ଲୋପ !
ନ ବାକ୍ୟ ଶେଷ !
ତୁଚ୍ଛର ନାଶେ ତଳେ
ନାହିଁ ମୋ ଅବଶୋଷ ।

—୨—

ତୁଚ୍ଛକୁ ଗୁଡ଼ି ସବୁ ଦିଶେ ଦିବ୍ୟ ରୂପ !
ଆଲୋକ ପ୍ଲାବନରେ ହସଇ ଅନ୍ଧକୂପ !
ଦିଶଇ ବୃନ୍ଦାରଣ୍ୟ ! ବିପୁଳ ଆଲୋକ !
ଅଖଣ୍ଡ ବଂଶୀନାଦ ଭୁଲାଏ ଶୋଷ ଶୋକ ।
ତମାଳ ତଳେ ଉଭା ମୂରତି ନଟବର,
ସେବାଦାସୀ ତୁ (୧) ପାଶେ । ଆହା କ ମନୋହର ।
କାନରେ ଯୋଡ଼୍ କୁ ଧର୍ମ, ସଜାଡ଼ି ଦେଉ କେଶ,
ତୋ କର ପରଶରେ ଦୂରିତ ଶ୍ରମ-କ୍ଲେଶ,
ଦିଶେ ତୋ ମନ୍ଦ ହସ, ଅଧରେ ତୃପତି,
ଇନ୍ଦ୍ରବର ସ୍ବାମିଣି ଗୃହିଁ ଲୋଭେ ଯତି ।
ସେ ନିତ୍ୟ ଗୋଲୋକର ତୁ ଅବା ପାଟରାଣୀ,
ତୋ ରାଜ୍ୟ ଭିକ୍ଷୁକ ମୁଁ ! ପତାଇ ବସେଁ କାନ
ଦେବୁ କି ନାହିଁ ଭିକ୍ଷା ଅନ୍ଧକୁ କହ ଧନ୍ୟ ?
ଯେଉଁଣେ ବୁହିଁଲେ ଦିଶୁ ମୋ ହୃଦ ଚିନ୍ତାମଣି ।”

## —ଛଇଶ—

### କାବ୍ୟ ନାୟିକା—

ବନ୍ଧୁ ଭରମେ ବନପଥେ,
ସରଗୁ ଆସିଛୁ ଖସି ସତେ !
ଝୁରୁଛ ଶେଫାଳି ଡାକେ ସଖି !
ଶିରେ ମୋର ପାଦ ଯାଅ ରଖି । ୧ ।
ଡାକେ ଶ୍ୟାମ ପ୍ରାନ୍ତର ଆଳି !
ବକ୍ଷେ ସଜନ ଯାଅ ଝୁଲି;
ଖଞ୍ଜନ ଗାଏ ନିଜ ପ୍ରାସ—
ତୋ ଯୁଗଳ ପଦେ କର ଦାସ । ୨ ।
ମୁଗ୍‌ଧେ ଅନାଏଁ ଦୂରୁ ଉଷା !
ଗନ୍ଧ ଫୁଲ ଜାଳେ ତାର ତୃଷା;
ବନ୍ଧୁ, ସେ ବଡ଼ ଅଭିମାନୀ
ଆକୁଳ ସମୀର ଟାଣେ କାନି । ୩ ।
ଧରାଦିଏ ନାହିଁ ! କହେ,—"ମାୟା !"
ମୃଦୁ ହାସେ ଜାଳେ କେତେ କାୟା
ନିଉଚ୍ଛଳ ମନେ କାଠ ଚମ୍ପା
ବନ୍ଧୁ ନୟନ-ଅନୁକମ୍ପା ।୪।
ଚପଳ ଚତୁର ମୃଦୁ ହାସ !
ସାଗର-ଗମ୍ଭୀର ଆଖି ପ୍ରାସ ।
ଲୁବ୍‌ଧ କବି ତା' ରଖେ ଛନ୍ଦ,
ଲୁଟିଲେ କାବ୍ୟ ମନେ ଧନ୍ଦ ! ।୫ ।

[୧୯୫୩]

---

—ଚବିଶ—

## ଗର୍ଦ୍ଦଭର ଦୁର୍ଗାପୂଜା—

ହେ ଜନନି ଅଷ୍ଟଭୁଜା !
　　　　　　ତୁମ ଆଗମନୀ—
ଗାଉଛନ୍ତି ଛନ୍ଦେ ଆଜ ଆକାଶ ଅବନୀ ।
ଉତ୍ସବର ନହବତ ଶୁଭେ ପ୍ରତି ପୁରେ,
ଉତ୍ସାହିତ ନୃତ୍ୟଗୀତ ବସୁଧା ବୁକୁରେ !
ଆନନ୍ଦ ପ୍ଲାବନେ ଅଦ୍ଧଂରବି ଉନ୍ମୀଳିତ,
ସ୍ୱଚ୍ଛନ୍ଦ ଆଲୋକେ ପଲ୍ଲୀପୁର ବିହସିତ !
ଚର୍ବ୍ୟ ଚୋଷ୍ୟ ଲେହ୍ୟ ଯେତେ······
　　　　　　କେ କରେ କଳନା !
ଅନ୍ତର-ବେଦନା-ଫଲ୍ଗୁ ହେଉଛି ବାଟବଣା !
କ୍ରମେ ଛବି ସ୍ପନ୍ଦ-ହୀନ !
　　　　　　ମୃତ୍ୟୁ ଅଭିନବ !······
ଦଗ୍ଧବ୍ୟଥା ବୁକୁ ଚିରି କାନ୍ଦଇ ଗର୍ଦ୍ଦଭ !···
(୧)ଦୂର-ନର୍କ-ଗଳା ମୋଡ଼େ !·········
　　　　　　ତୀବ୍ର !···
　　　　　　　　ମର୍ମଭେଦୀ !······
　ତା ବେଦନାତୁର ଦୃଷ୍ଟି ବିଶ୍ୱ ଯାଏ ଖେଦି—

(୧) ନର୍କ=ନରକ । କାବ୍ୟ ପ୍ରୟୋଗ କ୍ଷମଣୀୟ ।

ଉଲ୍‌କାସମ !
କୋଟି ଯୁଗ କରୁଣ ନୈବେଦ୍ୟ !
ହେ ବିଶ୍ୱଜନନ ତାକୁ ସହୁଛୁଟି ବେଦ୍ୟ ?

ପାଟଣା,
୧୨ । ୧୦ । ୫୩

---

—ପଚିଶ—

## ଅକାଳ ବସନ୍ତ—

ଛୁଟି ଡାକିଲା ଆସି ଦ୍ୱାରେ ।
କୌମୁଦୀ ସେବା ଅନ୍ଧାରେ !
ବସ୍ତୁତ ମରମର ସ୍ୱର,
ଫୁଟାଇଲା ଛୁଇଁ ମୁକତାରେ । ୧ ।

ମଳୟ ପରଶ ପଲ୍ଲବରେ !
ସଜନ ଘରେ କି ମନ ଧରେ ?
ଜର୍ଣ୍ଣ ତରୁରେ କିଶଳୟ !
ବାସି ଫୁଲେ ବାସ ସଞ୍ଚରେ ! ୨ ।

ଶ୍ୟାମଳ ଶାରଦ ଧାନ ବିଲେ,
—ନୟନକୁ ସୀମା ନାହିଁ ମିଳେ !
ଲକ୍ଷ ବଳାକା ଚଳେ ଉଡ଼ି,
ଦୂର ପଥ ଲଜେ ଗଲା ବୁଡ଼ି । ୩ ।

ବଂଶୀ ସେ ଦୂର କାନନର,
ମଧୁର ତା' ହାସ ଆନନର;
ଧୈର୍ଯ୍ୟ ବନ୍ଧ ହଏ ଟାଳ—
ଭଙ୍ଗୀ ଅରୂପ ସୁନ୍ଦର । ୪ ।

ଅସ୍ତ ସନ୍ଧ୍ୟା ! ଶେଷ ବାଟ !
ସେ କବା କୁହୁକ ଜଗାଟ !
ପୁଲକ-କମ୍ପେ ତନୁ ଥରେ—
ଚେତନାହତ କି ନୂଆ ନାଟ । ୫ ।

ଅଜ୍ଞାତେ ଖସେ ଦେହୁଁ ବାସ !
ଶିଥିଳ କବରୀ ! ଲାଗେ ହାସ—
ଚନ୍ଦନ କଏ ଯାଏ ବୋଳି,
ଜହ୍ନୁଲେ ସିନ୍ଧୁ ଯେନ ଗ୍ରାସ ! ୬ ।
ଗଣ୍ଡରେ ଖୋସଇଁ ବାସଫୁଲ,
ବେଶ କରଚଇ ! କବା ମୂଲ ?—
ଶୋକ ଅଭିମାନେ ହଜେ କଥା,
ମୋ ଦୁଆର ମୁଦ କରେଁ ଭୁଲ । ୭ ।
ଅସ୍ତନଗର ସେ କି ମାୟା !
ନିର୍ବାଣ ଶିଖା ଜ୍ୱଳେ ସଦା;
ବସଇଁ ବ୍ୟଥିତା ଅଭିମାନେ,
ବନ୍ଧୁ ହତାଶେ ଫେରେ ଆହା ! ୮ ।

---

[୧୯୫୩]

## ଦୀପାବଳୀ—

ଦୀପାଳି ଘରେ ଘରେ  କା' ଘର ଅନ୍ଧାର,
ଆଲୋକେ ଫୁଲ ଫୁଟେ  ମ୍ଳାନ କା' ମନ୍ଦାର ।
ପ୍ରାସାଦ ନବତଳ  ଅବା ସପତ ତଳ (୧)
ସପତ ରଙ୍ଗାଲୋକେ  କରେ ଝଲମଲ !
ବହୁରୂପୀ ଆଲୋକେ  ହାସ ପଡ଼େ ଭାଜି,
ଆଶା ଉଲ୍ଲାସ ଠାର  ଫୁଟେ ଆତସବାଜି !
ଆଜ ଯେ ଘରେ ଘରେ  ମିଷ୍ଟାନ୍ନ, ପଲାନ୍ନ,
କରୁଛି କେ ବଣ୍ଟନ  କେ' ଖାଲି ଦେଖେ ସ୍ୱପ୍ନ !
ସହରତଳି ଲକ୍ଷ—  ଛାଲପତ୍ର କୁଟୀ ! (୨)
ଆତସବାଜି ଶବ୍ଦେ  ଶିଶୁ କାନ୍ଦେ ଉଠି,—
"ବାବୁ, ପଇସା ଦିଅ,  ଜାଳିବ ଦୀପାଳି !"
ଭାଷଇ ପିତା,—
  "ବୃଥା ଅର୍ଥ ଶ୍ରାଦ୍ଧ ଖାଲି !
"ସହର ଗୋଟା ଦୀପ  ଆଲୁଏ ହେଲା ଘର,
"ଫୁଟୁଛି କେତେ ବାଣ !
  ଦେଖିଲେ ହେବ ନାହିଁ ?"

---

(୧) ବମ୍ବେ ସହରର ମେରିନ୍ ଡ୍ରାଇଭ (Marine Drive) କାନ୍ଥ ଉପରେ ବସିଲେ ଶତତାରକା ମାନଙ୍କର ଝଟକ କକ୍ଷଗୁଡ଼ିକ ଆଲୋକିତ ହେଲେ ଅପରୂପ ଦୃଶ୍ୟ ଦିଶେ।

(୨) ବମ୍ବେ ସହରତଳିର (slums) ଯୋଜନ ବ୍ୟାପୀ ଛାଲପତ୍ର କୁଟୀରଗୁଡ଼ିକ ରେଳଗାଡ଼ି ମଧ୍ୟରୁ ସ୍ୱତଃ ଦୃଷ୍ଟି ଆକର୍ଷଣ କରିଥାଏ ।

— ସତାଇଶ —

ପତ୍ନୀ—

୧—ପାଶେ ଥିଲେ ଚଞ୍ଚେ ଦୂରେ ! ଦୂରେ ମରେ ଝୁର ।

ଲେଖେ,—

"ତୁମ ଘର ଭଣ୍ଡ !···ଏ ତ ପ୍ରେତ ପୁରୀ !
ଭୁଲଇ ପାରୁନ ଦଶବାଇଙ୍କ ଜଞ୍ଜାଳ
ଗୋଟିଏ ତ ଦିନ ନୁହେଁ, ସର୍ବଗ୍ରାସୀ କାଳ !
ରହୁନ ଆପୃତ୍ତ ମନ, ସବୁ ହୁଏ ଭୁଲ,
ପିଲଙ୍କ ଓଜର ବସ୍ତୁ କାମୁଡ଼ିବା ଭୁଲ ।
ବିଦେଶରେ ଅସୁସ୍ଥତା କଥା ପୁଣି ଶୁଣି
ମନେ ହୁଏ ମୂର୍ଚ୍ଛା ଯାଏ ମୁହିଁ ସେହିକ୍ଷଣି ।
କୁଶଳ ସମ୍ବାଦ ଦେବ ନ ଭୁଲ ତୁରିତ,
ଉନ୍ନିଦ୍ର ଯାଉଛି ରାତି, ବିଭ୍ରମିତ ଚିତ୍ତ ।"

× × ×

ଅସ୍ଥିଖଣ୍ଡ ସାର ଦେହୁଁ ମାଂସ ମେଦ ଖସି,
ସ୍ମରଣ ନୁହଇ ଦିନେ ଥିଲା ସେ ରୂପସୀ ।
ଧୂଆଁ ଯୌବନ-ନିଶା, ବାସନା-ପାଉଁଶ,
ଉଚ୍ଛୁଳ ପ୍ରୀତି-ମାୟା ସୁବର୍ଣ୍ଣ ହୁତାଶ ।

ଚନ୍ଦ୍ରୀ—

୨—କ୍ଷୀଣ ସେନ୍ତ୍ର ବପୁ ପୂତ ଜାହ୍ନବୀ ସଦୃଶ,
ଆତ୍ମତ୍ୟାଗେ ପୁଷ୍ଟ କରେ ଅପୂର୍ଣ୍ଣ ପୌରୁଷ !
ପଶୁତ୍ୱେ ମାନବ ଦିବ୍ୟ କରେ ଯେ ପ୍ରତିଷ୍ଠା—
ଦେବତା ମନ୍ଦିରୁ ବଡ ! ତାର ପ୍ରୀତି-ନିଷ୍ଠା—
ଯୋଗୀଜନ ଦୃଢ଼ତତ୍ତ୍ୱ କରି ପରାହତ,
ପ୍ରପଞ୍ଚ ସୃଷ୍ଟିରେ ସ୍ଥାପେ ଅମୃତ ମହତ୍ତ୍ୱ ।
କ୍ଷୁଦ୍ର ସେନ୍ତ୍ର ଦେହ-ଯଷ୍ଟି ! କ୍ଲେଦ ଚର୍ମ ଶିରା !
ଜୀବନ୍ତ ସେ ଇତିହାସ ଦେଇ ଶୁଷ୍କ ମାସ !
ମାଂସ ଭୁଲେ ଖସିଅଛି ଯୌବନ ଉଦ୍ଦାମ,
ଉତ୍‌ଫୁଲ୍ଲ-ଆନନ-ପଦ୍ମ ଆଜ କ୍ଷୀଣ କ୍ଷାମ,—
ଶ୍ରାବଣର-ସ୍ରୋତସ୍ୱିନୀ ହାସ୍ୟରସ ପ୍ରୀତି,—
ବିସ୍ମରଣ ଆଜ ! ଶୁଭେ ଭସ୍ମ ଭେଦ ଗୀତି ।
ସେ ଦେହୀ ରଜପୁତାଣୀ ଗାଏ ମୁଗ୍ଧ କଣ୍ଠ,
ଜୀବନସର୍ବସ୍ୱ ମୋର ବୈଶାଖ-ଜାହ୍ନବୀ ।

ପାଟଣା ।
୧୭।୧୦।୧୯୫୩

---

## —ଅଠାଇଶ—

## ସତ୍ୟ ହେଉ ଉଷା ଅଭ୍ୟୁଦୟ—

୧—

ହେ ସିନ୍ଧୁ, ହେ ବନ୍ଧୁ ମୋର !
ସର୍ବାଙ୍ଗେ ପୁଲକ ଜାଗେ !
ସୂଚୀଭେଦ୍ୟ ଅନ୍ଧକାରୁ
ଚିର ଚୋଳ ଲକ୍ଷ ଢେଉ
ପ୍ରଳୟ ଶୀତଳ ଶ୍ୱାସ
ଦିଗ୍‌ବଳୟ ଭେଦ ସ୍ୱରେ
ଅନବଦ୍ୟ ଆଲୋଡ଼ନ !
ବିପର୍ଯ୍ୟସ୍ତ ପରଂପରା,
ବିଜୁଳି ଚମକେ ହସେ
ଉଷାର ସୁନ୍ଦର ନେଶ,
ଏ ଆନନ୍ଦ ଲଗ୍ନେ ବନ୍ଧୁ
ଗ୍ରାସ କର ଜୀର୍ଣ୍ଣ ଧରା !
ଧୀରେ, ଦୃଢ଼ ପଦକ୍ଷେପେ,
ଲୁପ୍ତ ହେଉ ଜୀର୍ଣ୍ଣ ସୃଷ୍ଟି !

ଦେଖି ଏ ପ୍ରଳୟଙ୍କର ବେଶ,
ଲଭି ବନ୍ଧୁ-ପୁରଣି-ଆଶ୍ଳେଷ ।
ଝଞ୍ଜାବାତ୍ୟା ହେଉଛି ପ୍ରସ୍ତୁତ,
ଯୁଦ୍ଧ ମାଗେ ଯେତେକ ଜୀବନ୍ମୃତ
ବ ଜ ଅଙ୍ଗ ତେଜେ ଲୁପ୍ତ ଆଶା,
ପୁରାଣ ଯୁଗର କାବ୍ୟ ଭାଷା ।
ଅବ୍ୟକ୍ତ ଏ ପ୍ରଳୟ ଆନନ୍ଦ !
ଜୀବନ ସଙ୍ଗୀତେ ଲାଗେ ଦ୍ୱନ୍ଦ୍ୱ ।
ଆଗାମୀ ଯୁଗର ନରଶିଶୁ,
ତା ପୌରୁଷ ସ୍ନିଗ୍ଧ ଏ କୁଳଶୁଁ ।
ବକ୍ଷ ପରେ ମୋର ମାଅ ବନ୍ଧୁ !
ଊର୍ଦ୍ଧ୍ୱପଥେ ଯାଅ ନାହିଁ ରନ୍ଧ୍ର !
ମ୍ଳାନ ପାପସ୍ତୂପ କର କ୍ଷୟ;
ନବୀନ ଉଷାର ହେଉ ଜୟ !

୨—

ଗର୍ଜିଉଠ ଫେନଚୂଡ଼ !
ଖେଦି ଯାଉ ଦିଗ୍ ବିଦିଗେ,

ଆଦି-ସୃଷ୍ଟି-ପ୍ରଳୟ-ତାଣ୍ଡବ—
ହଉରୁ ଜୀବନ ଅଭିନବ

ସତ୍ୟ ହେଉ ଉଷା ଅଭ୍ୟୁଦୟ—

ଏ ସୃଷ୍ଟି ଭୁବନର ସ୍ୱପ୍ନ, ହେ ଅର୍ଣ୍ଣବ, ପ୍ରାଣ ମୂଳାଧାର !
ଜରାଜୀର୍ଣ୍ଣ ବିକୃତିକୁ ସଙ୍କୁଚିତ କର ବା ସଂହାର ।
ସତ୍ୟ ହେଉ ଆଦିଧ୍ୱନି ଏ ବିଦ୍ୟୁତ୍ ଆଲୋକ ଚେତନା,
ଲୁପ୍ତ କରି ଛନ୍ଦ ନୃତ୍ୟ ପ୍ରପଞ୍ଚ ଏ କଳାର ଛଳନା ।
ଦିଗନ୍ତାଳ ନିର୍ଘୋଷେ ପ୍ଲାବି ସତ୍ତା ତବ କର ପ୍ରକାଶିତ,
ଆଗମେ ମୃଦଙ୍ଗ ନେଇ କଣ୍ଟକିତ ଶୁଣି ସେ ସଙ୍ଗୀତ ।
ଲୁପ୍ତ ହେବ ଯୁଗବ୍ୟାପୀ ଜୀର୍ଣ୍ଣ-ଧରା-ଶୋଣିତ-ଶୋଷଣ,
ମୃତ, ଅର୍ଦ୍ଧକବଳିତ— କୋଟିଶିଶୁ ବିପନ୍ନ କ୍ରନ୍ଦନ ।
ମିଥ୍ୟା ଅନାବୃତ ଚୌର୍ଯ୍ୟ, ରାଜକର-ଧର୍ମ-ବ୍ୟଭିଚାର,
ଅର୍ଣ୍ଣବ ପରମ ସ୍ରଷ୍ଟା ପ୍ଲାବନରେ କର ହେ ସଂହାର ।
ପୁରାଣ ମୁଁ ଶୁଷ୍କପତ୍ର ! ସେ ପ୍ଲାବନେ ଲଭିବ ଆଶ୍ରୟ ।
ମହାନ ନବୀନ ସ୍ୱପ୍ନ ! ସତ୍ୟ ହେଉ ଉଷା ଅଭ୍ୟୁଦୟ ।

ପୁରୀ······ଜନ୍ମାଷ୍ଟମୀ
୧୩।୮।୧୯୫୨

## —ଅଣତିରିଶ—

ନବକଳେବର—

ଯେ ରୂପ କୁସୁମ ମଉଳି ଯାଏ ମୋ
ନୟନ ଆଗେ,
ତାହା ଦେଖିବାର ବ୍ୟାକୁଳ ଚିତ୍ତେ
ଅଶ୍ରୁ ଜାଗେ । ୧ ।
ଯେ ନଦୀମାନ ଗୋଟି ସାଗରକୁ ଯାନ୍ତି
ଶୁଖଇ ପଥେ,
ଯେ ଗୀତ ମରଇ ପ୍ରଥମ ମଳୟ
ମରମ ଗତେ । ୨ ।
ମାଳତୀ ଗନ୍ଧ ବିଜୁଳୀ ପ୍ରକାଶେ
ଅନଳେ ନଭେ,
କେତେ ରୂପ ତେଜ କୂଳକୁ ନଛୁଇଁ
ବାହୁଡ଼ି ଯିବେ । ୩ ।

ଯେତେବେଳେ ବୋଇତ ସାଗର ମଧ୍ୟେ
ହୁଅଇ ଚୂନା,
ଅପୂର୍ଣ୍ଣ ଯେତେ ମରେ ନାହିଁ ପ୍ରୀତି
କରେ ତା' ସୁନା । ୪ ।

ତ୍ୟାଗ କେତନରେ ସୁନ୍ଦର ପୂତ
ଅମର ଚିର,
ଦୂରେ ପଡ଼ିଯାଏ ଭାଗ୍ୟ ବିଧାତା
ବିଷମ ତୀର । ୫ ।

ହରାଇ ମଣିକ ନିଃସ୍ୱ ହେଉଛି
ଭାଗ୍ୟବାନ,
ପ୍ରେମ ଜଳ କଣ୍ଟୁ ବୁଝୁ ନାହିଁ ତବ
ହେ ଭଗବାନ । ୬ ।
ସ୍ପନ୍ଦୁଁ ଠିଆ ହୁଏ ଅଶ୍ରୁକୁ ପୋଛୁ
ଭଗ୍ନ-ଜାନୁ,
ଅପରୂପ ପ୍ରୀତି ବିଭାସେ ପାତ୍ର
କ୍ଷୁଦ୍ର ସାନୁ । ୭ ।
ହୃଦୟ ଶ୍ମଶାନେ ବିରଚଇ ସ୍ୱର୍ଗେ
ବୃନ୍ଦାବନ,
ହରାଇ ମହାନ ନବ କଳେବର
ନିସ୍ୱଃଜନ । ୮ ।

[୧୯୫୬]

---

—ତରୁଣ—

## ଅସୀମ କ୍ଷୁଧା

 କ୍ଷୁଧାର ସ୍ୱରୂପ ଆଜଯାକେ ମୂଢ଼
ବୁଝିଲୁ ନାହିଁ ?
ଭୂତଗ୍ରସ୍ତ ପରି ଅସୀମ ଅସୀମ
କରୁ ବଡ଼ାଇ । ୧ ।

ଦେଉଳ ଭିତର ଅନ୍ଧାର ଚିର
ନାହିଁ କି ଜଣା ?
ଶୂନ୍ୟେ ଜଳଦ ସୃଷ୍ଟି କରି ତୁ
ହେଉଛୁ ବଣା । ୨ ।

ଅସୀମ ନିଶାରେ ସସୀମ ତୋ ହାତୁଁ
ଯାଉଛୁ ଖସି,
ନ ବୁଝି ସିନ୍ଧୁ ରୂପ— ହାସ ଢେଉ
ଗଣୁଛୁ ବସି ? । ୩ ।

ବିଜ୍ଞାନ କଳା ସୃଷ୍ଟି କରି ତୁ
କାବ୍ୟ ଲେଖି,
କଳ୍ପ ଲେଖକର ସ୍ରଷ୍ଟା ନାମ ଯେ
ଲୁଣ୍ଠ ଦେଲୁ । ୪ ।

କଳା ବଜାରକ ସଦ୍‌ଗୁରୁ ଭଳି
ଗଳା ଭୁ ଛନ୍ଦୁ,
ରଜତ ଝରଣା ନ ଦେଉ କହୁ ଏ
"ଝରଇ ମଧୁ !" । ୫ ।
ସସୀମ ତୋ ଝୁଧା ସମିନାହିଁ ଓଲୁ !
ସୃଷ୍ଟି କାନ୍ତୁ,
ସ୍ରଷ୍ଟା ଆଦେଶେ କେତେ ପରକାରେ
ନସ୍କଜ ଭାଲୁ । ୬ ।
ଉଦର ପୂର୍ତ୍ତି ଯୌନବୃତ୍ତି
ମରଣ ଡର,
ବିଭୁଜର ବାହୁ ବଢ଼ାଇବା ମାତ୍ର
ଦାସ୍ୟ କର । ୭ ।

[୧୯୫୪]

ମୁଦ୍ରାକର—ଶ୍ରୀ ସତ୍ୟନାରାୟଣ ମିଶ୍ର, ଓଡ଼ିଶା ପବ୍ଲିଶିଂ ପ୍ରେସ,
କଟକ । ୧୯୫୮ ।

# ଟିପ୍ପଣୀ

୧ । ଯାତ୍ରା ସଙ୍ଗୀତ—

ଯାତ୍ରା ସଙ୍ଗୀତ, ବାସର ଗୃହ, ଚତୁର୍ଦ୍ୱା, ପାନ୍ଥଶାଳା ଏ ସମସ୍ତ ରଚନାର ଦୃଷ୍ଟିଭଙ୍ଗୀ ଓ ଅନ୍ତର୍ନିହିତ ତତ୍ତ୍ୱ ଏକ । ଏସବୁ ପାଠ କଲାବେଳେ ପାଠକ ଚତୁର୍ଦ୍ୱାର ପ୍ରଥମ ପଂକ୍ତିଟିକୁ ସ୍ମରଣ ରଖିଲେ ଅର୍ଥ ସୁଲଭ ହେବ—

ମୁଁ ଚିର ପଥିକ ଯାତ୍ରୀ !
ଏ ମରତେ ଦୂର ପରବାସୀ,

ଏ ମାୟିକ ସୃଷ୍ଟିରେ ସକଳ ପରିବର୍ତ୍ତନଶୀଳ, ଅସ୍ଥିର ଓ ନଶ୍ୱର । ଜୀବରୂପୀ ମାନସ ହଂସ ଆପଣାର ସୁଦୂର ଲକ୍ଷ୍ୟ କଥା ଭୁଲି ମର୍ତ୍ତର ବାସନା ଜାଲରେ ବନ୍ଧିତ ବିକଳ ହୁଏ । ତାର ତୃଷା କ୍ଷୁଧା ପ୍ରେୟସୀର ଅମର ପ୍ରୀତିରେ ଶିଶୁର ଅମର ଆଶାର ନିର୍ଦ୍ଦେଶରେ ପୂର୍ଣ୍ଣ ହେଲେ ହୁଏତ ସେ ସମଗ୍ର ମର୍ତ୍ତ୍ୟମଣ୍ଡଳକୁ ଗ୍ରାସ କରିବାକୁ ଇଚ୍ଛା କରେ । ମର୍ତ୍ତ୍ୟର ପ୍ରବାସୀ ପକ୍ଷରେ ଏହା ଯେପରି ଅଶୋଭନୀୟ ସେହିପରି ଅପ୍ରାକୃତିକ । ତେଣୁ ମର୍ତ୍ତ୍ୟର ପ୍ରବାସୀକୁ ଉଦ୍‌ବୁଦ୍ଧ କରି କୁହା ହୋଇଛି—ମିଥ୍ୟା ବିପଣୀରେ ବଣିଜ ଶେଷକର । ତୋର ହୃଦୟର ମଣି ଅନ୍ତର୍ନିହିତ । ପ୍ରାଣର ନିଗୂଢ଼ କୁଞ୍ଜରେ ତାର ମୁରଲୀ ଧ୍ୱନି ଶ୍ରବଣ କରି ଏ ମାୟିକ ପ୍ରବାସର ଆକର୍ଷଣ ଓ ମୋହକୁ ଭୁଲି ସୁଦୂରର ଲକ୍ଷ୍ୟରେ ପୁଣି ଯାତ୍ରାରମ୍ଭ କର । ନିତ୍ୟ ରାସସ୍ଥଳୀ ଗୋଲୋକରେ ଜୀବନ ଦେବତାଙ୍କ ସହିତ ମିଳନ ଅବଶ୍ୟମ୍ଭାବୀ ।

୨ । ବର୍ଷାବରଣ—

ବୈଶାଖ ଆତପଦଗ୍ଧ ଧରଣୀକି ନିରୀକ୍ଷଣ କରି ଲେଖକ ବିକଳ କଣ୍ଠରେ ବର୍ଷା ଆବାହନ କରୁଅଛନ୍ତି । ବାରିବର୍ଷଣକାରୀ ଘନ ଅମୃତ ଜୀବନର ଉତ୍ସ ଓ ଅମୃତ ରସର ଆଧାର । ତାକୁ ଛାଡ଼ି ଏ ସୃଷ୍ଟି ସମ୍ଭବ ନୁହେଁ । ତେଣୁ ସକଳ ସୃଷ୍ଟିର ମୁଖପାତ୍ର ରୂପେ ଲେଖକ ବର୍ଷାକୁ ବରଣ କରୁଅଛନ୍ତି । ପ୍ରଥମ ପଦର ପ୍ରଥମ ପଂକ୍ତିରେ କେହି କେହି ଭୌଗୋଳିକ ଭ୍ରମ ନିର୍ଦ୍ଦେଶ କରିପାରନ୍ତି । ମାତ୍ର ପ୍ରତ୍ୟାବୃତ୍ତ ମୌସୁମୀବାୟୁ ବହିବା ବେଳେ ଉତ୍ତର ଦିଗରୁ ମେଘର ଆବିର୍ଭାବ ଏକାନ୍ତ ସମ୍ଭବ । ଏ ରଚନାର ଛନ୍ଦ ବିନ୍ୟାସ ଓ ସଙ୍ଗୀତ (Lyrical value) ଲକ୍ଷ୍ୟ କରିବାର କଥା ।

୩ । ନିଶୀଥ ଯାତ୍ରୀ—

ପୂର୍ବ ରଜନୀରେ ଲେଖକ ରଙ୍ଗମଞ୍ଚରେ "ନିମାଇଁ ସନ୍ନ୍ୟାସ" ଅଭିନୟ ଦେଖି ଅତ୍ୟନ୍ତ ଅଭିଭୂତ ହୋଇଥିଲେ । ପରଦିବସର ଉପଲକ୍ଷ୍ୟ ସଙ୍ଗୀତ ସତ୍ୟ । ଅର୍ଦ୍ଧରାତ୍ରିକୁ ନଗରର କୋଳାହଳ ଘଣ୍ଟା ଏ ଦୁଇଘଣ୍ଟା ପର୍ଯ୍ୟନ୍ତ ବନ୍ଦ ରହିଯାଏ । ଉକ୍ତ ନୀରବତା ମଧ୍ୟରେ ଯେ କୌଣସି କଣ୍ଠସ୍ୱର ଗୃହତ୍ୟାଗୀ ସନ୍ନ୍ୟାସୀର ବ୍ୟାକୁଳ କ୍ରନ୍ଦନ ଭଳି ପ୍ରତୀୟମାନ ହୋଇପାରେ ।

୪ । ଅମ୍ବପାଳିର ଉତ୍କଣ୍ଠା—

ଅମ୍ବପାଳି ବୈଶାଳୀ ନଗରର ପ୍ରଖ୍ୟାତନାମା ରାଜନର୍ତ୍ତକୀ । ନୃତ୍ୟକଳା ପ୍ରଦର୍ଶନୀ ଦ୍ୱାରା ସେ ଜୀବନରେ ପ୍ରଭୂତ ଅର୍ଥ ସଞ୍ଚୟ କରିଥିଲେ । ଆପଣାର ଅଲୌକିକ ରୂପଲାବଣ୍ୟ ବିଷୟରେ ମଧ୍ୟ ଆଜୀବନ ସଜାଗ ଥିଲେ; କିନ୍ତୁ ଭିକ୍ଷୁଶ୍ରେଷ୍ଠ ବୁଦ୍ଧଙ୍କର ବୈଶାଳୀ

ଆଗମନ ବାର୍ତ୍ତା ଶତ ସହସ୍ର ପୁରଜନଙ୍କଠାରୁ ତଥାଗତଙ୍କର ଭିକ୍ଷା ଗ୍ରହଣ ଓ ଶିକ୍ଷାଦାନ କଥା ଶ୍ରବଣ କରି ଆପଣାର ସମୃଦ୍ଧ ପ୍ରାସାଦରେ ତାଙ୍କୁ ଅଭିନନ୍ଦନ କରିବାର ସ୍ପୃହା ତାଙ୍କ ମନରେ ଜାଗ୍ରତ ହେଲା । ତଥାଗତ ଅମ୍ବପାଳିଙ୍କଠାରୁ ଭିକ୍ଷା ଗ୍ରହଣ କରିବାକୁ ସମ୍ମତି ପ୍ରଦାନ କରିଥିଲେ ମଧ୍ୟ ତାଙ୍କର ସେ କଥା ପ୍ରତ୍ୟୟ ହେଉ ନ ଥିଲା । ଗଣିକାଙ୍କର ବ୍ୟବସାୟଗତ ସଂସ୍କାରକୁ ଅବହେଳା କରି ସତେ କି ମହାକାରୁଣିକ ତାଙ୍କର କୁଟୀର ଦ୍ୱାରରେ ଉପନୀତ ହେବେ ? ଅମ୍ବପାଳିଙ୍କର ଏହି ସମୟର ମାନସିକ ଅବସ୍ଥା ରଚନାର କଥାବସ୍ତୁ ।

### ୫ । ଶିଶୁସୃଷ୍ଟି –

ଶିଶୁସୃଷ୍ଟିର ଭବିଷ୍ୟତ ଉଜ୍ଜ୍ୱଳ । ଶିଶୁ ଅମୃତ ଜୀବନର ଓ ଅଖଣ୍ଡ ପ୍ରଗତିର ଉତ୍ସରୂପେ ସର୍ବଥା ସ୍ପୃହଣୀୟ । ଉଷା ଆନନ୍ଦ ଦାନ କଲାପରି ଶିଶୁ ଜୀର୍ଣ୍ଣ ସୃଷ୍ଟିରେ ଆଶାର ସଞ୍ଚାର କରି ଆନନ୍ଦ ଦାନ କରିଥାଏ । ତେଣୁ ଲକ୍ଷ୍ୟ କୋଟି ଶିଶୁ ସୃଷ୍ଟିକୁ ଆଲିଙ୍ଗନ କରିବାରେ ଲେଖକ ମନରେ ଯେ ସ୍ପୃହା ଓ ଆନନ୍ଦ ଜାଗ୍ରତ ହୋଇଅଛି, ତାହା ସ୍ୱାଭାବିକ ।

### ୬ । ବାସର ଗୃହ –

ପ୍ରଣୟୀ ଓ ପ୍ରଣୟିନୀଙ୍କର ପ୍ରଥମ ମିଳନ କ୍ଷେତ୍ର । ଏ କ୍ଷେତ୍ରରେ ପ୍ରଣୟୀ ପ୍ରଣୟିନୀ ପ୍ରାଥମିକ ଉଚ୍ଛୃଙ୍ଖଳତାକୁ ପରିହାର କରି ନ ଥିଲେ ସୁଦ୍ଧା ଯଥେଷ୍ଟ ସଂଯମର ପରିଚୟ ଦେଇଛନ୍ତି । ଉଭୟଙ୍କର ଦୃଷ୍ଟିଭଙ୍ଗୀ କିନ୍ତୁ ଅସାମାନ୍ୟ । ତେଣୁ ପ୍ରଣୟିନୀ ଏ ମର୍ତ୍ତ୍ୟ ପ୍ରବାସ କଥା ଚେତାଇ ଦେଉଅଛି । ସେ ଜାଣେ

ଯେ ତାର ପ୍ରଣୟୀ ଏ ମର୍ତ୍ତ୍ୟର ପ୍ରବାସୀ । ସୁଦୂର ଚକ୍ରବାଳ ଭେଦ ତାର ଆଦର୍ଶ । ସେ ଆଦର୍ଶକୁ ପ୍ରଣୟର ସଙ୍କୀର୍ଣ୍ଣ ସୀମା ମଧ୍ୟରେ ସେ ବାନ୍ଧି ରଖିବାକୁ ଲୋଡ଼େ ନା । ମିଳନର ଏହି କ୍ଷଣିକ ଶୁଭ ମୁହୂର୍ତ୍ତଟିକୁ ସେ ସ୍ମୃତି ପଟରେ ଅମର ରଖିବାକୁ ପ୍ରସ୍ତୁତ ଥିଲେହେଁ ପ୍ରଣୟୀର ପଥରୋଧ କରିବାକୁ ଆଦୌ ପ୍ରସ୍ତୁତ ନୁହେଁ । ତେଣୁ—

"ମୁକ୍ତ ଦ୍ୱାର ତୁମ ଲାଗି..................
..................ବନ୍ଧୁ, ପ୍ରିୟ, ବିଦାୟ, ବିଦାୟ"

୭ ଓ ୮ । ପଥଛାୟା ଓ ପାନ୍ଥଶାଳା—

ଦୂର ପ୍ରବାସୀ ମାନବ ଏ ମର୍ତ୍ତ୍ୟ ପଥରେ ବହୁ ବୃକ୍ଷଛାୟା ତଳେ ବିଶ୍ରାମ ଲାଭ କରିଅଛି; ପାନ୍ଥଶାଳାରେ ରାତି ଲାଗି ଆଶ୍ରୟ ଲାଭ କରିଅଛି । ଜୀବନର ଅର୍ଦ୍ଧ ପଥରେ ସେହି ଶତ ଶତ ଛାୟାବୃକ୍ଷ ଓ ପାନ୍ଥଶାଳାର ସ୍ମୃତି ଏକାନ୍ତ ସ୍ୱାଭାବିକ । ସେ ସମସ୍ତ ମଧ୍ୟରୁ ଅଧିକାଂଶ ବିସ୍ମୃତ ହେଲେ ମଧ୍ୟ ଆତ୍ମସତ୍ତାରେ ସେମାନଙ୍କର ପ୍ରଭାବ ଅବିନଶ୍ୱର । ଲେଖକ ସେ ସମସ୍ତ ସ୍ମରଣ କରି ଆନ୍ତରିକ କୃତଜ୍ଞତା ଓ ଆନନ୍ଦ ଜ୍ଞାପନ କରିଅଛି ।

୯ । ବିଟ୍ରେଚିଶ—

ଇଟାଲି ଦେଶର ମଧ୍ୟଯୁଗର ଶ୍ରେଷ୍ଠ କବି ଦାନ୍ତେ—ତାଙ୍କର ବ୍ୟାବହାରିକ ଜୀବନରେ ବିଟ୍ରେଚିଶଙ୍କ ପ୍ରଣୟ ସୁଲଭ ନହୋଇ ଥିଲେହେଁ କବି ପ୍ରଣୟ ଓ ନିଷ୍ଠା, କାବ୍ୟଜଗତରେ ଅସରନ୍ତ ଉତ୍ସରୂପେ ଜୀବନ୍ତ ରହିଅଛି । ବିଟ୍ରେଚିଶ ଅନ୍ୟ ଏକ

ଅଭିଜାତ ଧନୀକଙ୍କର ପୌ°ତ୍ରହଣ କଲେହେଁ କବି ଗୁରୁ ଦାଶେନ୍ତ ତାଙ୍କୁ ଆଜୀବନ ସ୍ମରଣ ରଖିଥିଲେ । କବିଙ୍କ ଦୃଷ୍ଟିରୁ ଏହି ରଚନାରେ ପ୍ରଣୟର ବ୍ୟାଖ୍ୟା ହୋଇଅଛି ।

୧୦ । କୃସ୍ନା ଗୌତମୀ—ପୃଷ୍ଠ ନୋଟରେ ଦିଆଯାଇଥିବା ବ୍ୟାଖ୍ୟା ଦ୍ରଷ୍ଟବ୍ୟ ।

୧୧ । ଉମା—

ଉଚ୍ଚ ଶିକ୍ଷିତା ଆଧୁନିକା ରୂପବତୀ ବାଳିକାର ପ୍ରତୀକ । ପୋଥିରେ ଆମ୍ଭେମାନେ ଯେତେଗୁଡ଼ିଏ ଆଦର୍ଶ ଓ ଗୂଢ଼ତତ୍ତ୍ୱ ଶିଖୁଁ ଏବଂ ସେହି ଆଦର୍ଶର ସ୍ୱପ୍ନ ଦେଖି ଯେତେ ବାହ୍ୱାସ୍ଫୋଟ ମାରି ଅଭିମାନ ପ୍ରକାଶ କରୁଁ, ସେ ସମସ୍ତ ବାସ୍ତବ ଜଗତରେ ଯେ କେଡ଼େ ତୁଚ୍ଛ ତାହା ଉମା ଆପଣାର ନିଜ ଜୀବନରେ ପ୍ରମାଣିତ କରିଅଛି । ଶେଷ ପଂକ୍ତିଗୁଡ଼ିକରେ ସେ ଧର୍ମ ଓ ନୀତି-ଶାସ୍ତ୍ରର ଆଦର୍ଶକୁ ଲକ୍ଷ୍ୟ କରି ଯେଉଁ ନୈରାଶ୍ୟ ପ୍ରକାଶ କରିଅଛି ଏବଂ ଦନ୍ତ ବ୍ୟାଦାନ କରି ଯେଉଁ ତୁଚ୍ଛ ହସ ହସିଅଛି, ତାହା ଲକ୍ଷ୍ୟ କରିବାର ବିଷୟ ।

୧୨ । ଉପମା ବିରୋଧ—

କବିମାନେ ଆଜି ପର୍ଯ୍ୟନ୍ତ ପ୍ରଣୟ ସମ୍ବନ୍ଧରେ ଯେତେ-ଗୁଡ଼ିଏ ଉପମାର ସୃଷ୍ଟି କରିଅଛନ୍ତି, ତାହା ପୀଡ଼ାପ୍ରଦ ଓ ନିରାନନ୍ଦମୟ । ବାସ୍ତବପ୍ରୀତି ଓ ଉପମାର ଆନନ୍ଦ କେବଳ ବ୍ୟଥା ଓ ଅଶ୍ରୁରେ ସୁଲଭ ।

୧୩ । ମୃତ୍ତିକା ଦର୍ଶନ—

ରଚନା କାଳ ୧୯୩୪ ମସିହା ଜୁଲାଇ ମାସ । କଥା ବସ୍ତୁର ଉତ୍ପତ୍ତି—ଲେଖକର ଶିଶୁପୁତ୍ରର ବିୟୋଗ । ରଚନାର ତତ୍ତ୍ୱ ପ୍ରତିଚ୍ଛଦରେ ଦର୍ଶିତ ହୋଇଥିବାରୁ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଅନାବଶ୍ୟକ ।

ସାରକଥା—ପୁନର୍ଜନ୍ମ କାଳ୍ପନିକ ଆଶ୍ୱାସ । ଏ ସୃଷ୍ଟିରେ ସବୁ ମାଟିରୁ ଉଦ୍ଭବ ହୋଇ ମାଟିରେ ମିଶେ । ମୃତ୍ୟୁ, ଯନ୍ତ୍ରଣା ଓ ରୋଗର ଦୈନନ୍ଦିନ ଦୁର୍ବିପାକ ମଧ୍ୟରେ ଈଶ୍ୱର ସତ୍ତା ନିର୍ଦ୍ଦେଶ କରିବା ଏକ କଠିଣ ବ୍ୟାପାର । ପ୍ରକୃତି ନିଷ୍ଠୁର । ଦୁର୍ବଳର ଏ ସଂସାରରେ ସ୍ଥାନ ନାହିଁ । ମୃତ୍ୟୁହିଁ ତାର ଏକାନ୍ତ ପରିଣତି । ଏ ମାୟିକ ଜଗତରେ ଯେତେ ଦୃଶ୍ୟ ଆମ୍ଭମାନଙ୍କର ଗୋଚରୀଭୂତ ହୁଏ, ତାହା କେବଳ ମହା ଶୂନ୍ୟ ଆକାଶରେ ବିଭିନ୍ନ ରାଗ ରଞ୍ଜିତ ମେଘମାଳାର କ୍ରୀଡ଼ା ମାତ୍ର । ଜନ୍ମ ଓ ମରଣକୁ ତୁଚ୍ଛ କରି ମହାଶୂନ୍ୟ ବିରାଜମାନ । ସେହି ମହାଶୂନ୍ୟ ତଳେ ପୃଥିବୀର ମାଟି ପୁଣି ପ୍ରଣୟିନୀ ହେବାର ଧୃଷ୍ଟତା ପୋଷଣ କରେ । ବିଭିନ୍ନ ରାଗରଙ୍ଗ ଭୂଷିତା ହୋଇ କୀଟ ଦଂଷ୍ଟ୍ର ସନ୍ତାନ କଥା ଭୁଲି ପ୍ରକୃତି ବା ମାୟାକୁ ସାହାଯ୍ୟ କରେ ।

ଧର୍ମ ପ୍ରଚାରକ ମନ୍ତ୍ର ବୋଲନ୍ତୁ । ଦଶର୍ଯ୍ୟଙ୍କ କରନ୍ତୁ । ମାତ୍ର ମହାଶୂନ୍ୟ ସନାତନ ସତ୍ୟ ଭଳି ସବୁ ଦେଖି ନିର୍ବିକାର । କାବ୍ୟଦୃଷ୍ଟିରେ ଦୁଇଟି ସତ୍ୟ ବିଦ୍ୟମାନ—ପ୍ରଥମ—ମହାଶୂନ୍ୟ; ଦ୍ୱିତୀୟ—ରୋଗ, ଜରା, ମୃତ୍ୟୁ, ବ୍ୟାଧିକ୍ଲିଷ୍ଟ ବିପନ୍ନ ମାନବର ସେବା ଓ ଉତ୍ସାହ ଦାନ । ଏହି ଦୁଇ ବିଷୟର ଉପଲବ୍ଧିରେ ଶାନ୍ତି ଓ ଆଶ୍ୱାସନା ସମ୍ଭବ ହୋଇପାରେ ।

* ୫ମ ପଦ୍ୟ ପୃ୭-ପଂକ୍ତି ୫ —

ସେ ସମୟରେ ବା ଘଟଣାର କିଛିଦିନ ପୂର୍ବରୁ କେତୋଟି ଗଡ଼ଜାତରେ ଗୁଳିବୃଷ୍ଟିରେ ନିରୀହ ମୂକ ପ୍ରଜାମାନଙ୍କୁ ମାରି ଦିଆଯାଇଥାଏ । କାବ୍ୟ ରଚୟିତାର ଐତିହାସିକତା ଏ ପର୍ଯ୍ୟନ୍ତ ମାତ୍ର ବହୁତ ବ୍ୟାପାର ଲୁଚେଇ ସଂଘଟିତ ହେବା ହେତୁ ସଠିକ ବିବରଣୀ ଦିଆ ଯାଇନାହିଁ । ଉପଲକ୍ଷ୍ୟ ମାନବ-ସମ୍ପ୍ରଦାୟ ଏ ପର୍ଯ୍ୟନ୍ତ କାରା ଅଥବା ପ୍ରଦର୍ଶନୀ ଗୃହରେ ଆବଦ୍ଧ ନ ହୋଇ ସ୍ୱାଧୀନ ଭାରତରେ ସ୍ୱାଧୀନ ଭାବରେ ଚରି କରୁଅଛନ୍ତି ।

୧୪ । ହରିଜନ—

ପଦ୍ୟର ଉତ୍ପତ୍ତି United Pressଙ୍କର ଏକ କ୍ଷୁଦ୍ର ସମ୍ବାଦ:—

Tragic Death of Sweeper Woman

Patna, June 12.

Reports of the death of a sweeper woman and her children under very tragic circumstance have been received from Khaji Khallan, Patna City.

It is said that a certain woman of the locality drew the attention of the sweeper woman to some sweets lying in the dustbin which the latter took out and ate with her children with the above results.

—United Press.

ରଚନାକାଳ ୧୫।୬।୧୯୪୦ । ପଦ୍ୟଟି ସ୍ୱଳ୍ପଜୀବୀ “ଆରତି” ମାସିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । “ହରିଜନ” ଶିରୋନାମା କାଟି “ବୁଭୁକ୍ଷୁ” ନାମକରଣ ଉଦ୍ଦେଶ୍ୟରେ ସମ୍ପାଦକ ସମ୍ଭବତଃ ଶ୍ରୀମାନ୍ ଶଚି ରାଉତରାୟ ଅନୁରୋଧ କରିଥିଲେହେଁ ତାହା ରକ୍ଷା

କରିଯାଇ ପାରିନାହିଁ । ହରିଜନମାନେ ଯେ ହିରଙ୍କର ଏ ପର୍ଯ୍ୟନ୍ତ ଗ୍ରହଣୀୟ ହୋଇ ନାହାନ୍ତି, ତାହାର ପ୍ରମାଣ ଶେଷ ପଂକ୍ତି ଦ୍ୱୟରେ ସ୍ଥାନ ଦେବାକୁ ଚେଷ୍ଟା କରିଅଛି । ଅଖାଦ୍ୟ ଯେଉଁ ଦେଶକାଳରେ ଖାଦ୍ୟରୂପେ ବିବେଚିତ ହୁଏ, ସେ ସ୍ଥଳରେ "ରାମ ନାମ" ଶ୍ରବଣ ବା କୀର୍ତ୍ତନ ଏକ ପ୍ରହସନ ବୋଲି ଖ୍ରୀଷ୍ଟ ଦନ୍ତ ନିକୁଟାଇ ଗର୍ଜନ କରି ଉଠିଛି । ଚିତ୍ ହେବିତ ଏହି ସାମ୍ୟ ମୈତ୍ରୀ ପ୍ରକୃତିତ ଭୂଖଣ୍ଡରେ ଯେ କୋଟି କୋଟି ଜନସମାଜ ଖ୍ରୀଷ୍ଟ ସମାଜର ଅନ୍ତର୍ଭୁକ୍ତ ହୋଇ ରହିଛନ୍ତି, ଏହା ମଧ୍ୟ ପ୍ରମାଣିତ କରିଅଛି ।

୧୫ । ପତ୍ନୀତ୍ୱର ପୂର୍ବେ—

ଆଧୁନିକ ବୈଜ୍ଞାନିକ ଯୁଗର ପ୍ରଣୟିନୀମାନେ ତାଙ୍କର ଉଚ୍ଛୃଙ୍ଖଳ ପ୍ରଣୟୀଙ୍କୁ ବିପଥଗାମୀ ହେବା ଦୋଷରୁ ରକ୍ଷା କରି ପାରନ୍ତି । ଏହି ଦୃଢ଼ ବିଶ୍ୱାସ ଏହି ରଚନାର ଜନ୍ମଦାତା । ବାସ୍ତବ ଜଗତରେ ପ୍ରଣୟର ସ୍ୱରୂପ ଓ ଗୌରବ ଆଧୁନିକା ପ୍ରଣୟିନୀମାନେ ପ୍ରଣୟୀଙ୍କୁ ଏ ରଚନାରେ ଚେତାଇ ଅଛନ୍ତି ।

୧୬ । ଶହୀଦ୍ ବନ୍ଦନା—

ରଚନାକାଳ—୧୯୪୩ । ସେହି ବର୍ଷ ୨୯ ତାରିଖ ଦିନ ସଂଘଟିତ କପୁର ଶହୀଦମାନଙ୍କର ଫାଶୀ ଏ ରଚନାର ଉପଲକ୍ଷ୍ୟ ବିଷୟ । ପ୍ରକାଶ ଥାଉ କି ସାମ୍ରାଜ୍ୟବାଦୀ ବ୍ରିଟିଶ୍ ସରକାର ନିଜ ଆସନର ଟଳମଳ ଅବସ୍ଥାରେ ମଧ୍ୟ ଶହୀଦ୍‌ମାନଙ୍କର ଫାଶୀ ଆଦେଶ ବିଧାନ କରିଥିଲେ ।

୧୭ । ରାଷ୍ଟ୍ର ରହସ୍ୟ—

ରଚନା କାଳ—୧୯୪୭ । ଏହି ରାଜନୈତିକ ରଚନାର ଅନ୍ତର୍ନିହିତ ରାଷ୍ଟ୍ରତନ୍ତ୍ର ସବଜନ ସୁବିଦିତ । ବିପୁଳ ଶକ୍ତିଶାଳୀ

ସାମ୍ରାଜ୍ୟବାଦୀ ସରକାରର ପଶ୍ଚାଦ୍‌ଭାଗରେ ଯେ ଶୂନ୍ୟତା ରହିଥାଏ ତାହା ସାଧାରଣ ନାଗରିକ ଜାଣିବାର ଚେଷ୍ଟା କରେ ନାହିଁ ବୋଲି ରାଷ୍ଟ୍ରଯନ୍ତ୍ରକୁ ଦେବତା ତତ୍ତ୍ୱ ଉପୁ କରେ । ଏ ସାଧାରଣତନ୍ତ୍ର ଯୁଗରେ ରାଷ୍ଟ୍ର ରହସ୍ୟ ଉପଲବ୍ଧି ନ କଲେ ଗଣତନ୍ତ୍ରର ମୂଳ ଭିତ୍ତି ଦୁର୍ବଳ ହୋଇଯିବ । ଯୁଦ୍ଧର ଅବ୍ୟବହିତ ପରେ ଏ ପଦ୍ୟ ରଚିତ ହୋଇଥିବାରୁ କେତେକ ସମସାମୟିକ ଘଟଣାର ଉଲ୍ଲେଖ ହୋଇ-ଅଛି । ଫୁଟ୍ ନୋଟ୍ ବା ଟିପ୍‌ପଣି ଦ୍ରଷ୍ଟବ୍ୟ ।

## ୧୮ । ଗଣବନ୍ଧୁ ଗାନ୍ଧି—

୧୯୪୮ ସାଲ ଜାନୁୟାରୀ ୩୦ ତାରିଖ ଶୁକ୍ରବାର ଦିନ ନାଥୁରାମ ଗଡ୍‌ସେଙ୍କ ଗୁଳି ଷ୍ଟେଟରେ ମହାମାନବ ମହାତ୍ମା ଗାନ୍ଧିଙ୍କର ମହାପ୍ରୟାଣ ହୋଇଥିଲା । ତାହାର ପରବର୍ତ୍ତୀ ସପ୍ତାହ ମଧ୍ୟରେ ଏହି ଛଅଟି ଚତୁର୍ଦ୍ଦଶପଦୀ କବିତା ରଚିତ ହୋଇଥିଲା । ଭାରତୀୟ ରାଷ୍ଟ୍ରର ଦେବତା କୌଣସି ଅଦୃଷ୍ଟ ଶକ୍ତି ନ ହୋଇ ଗଣକୁ କଳ୍ପନା କରାହୋଇଅଛି । ତେଣୁ ଗାନ୍ଧି କୌଣସି ଅଶରୀର ଶକ୍ତିସମ୍ପନ୍ନ ବ୍ୟକ୍ତି ନ ହୋଇ ଏହି ମହାଭାରତୀୟ ଗଣର ବନ୍ଧୁରୂପେ ଅବତୀର୍ଣ୍ଣ ହୋଇଅଛନ୍ତି ।

## ୧୯ । ଖେଳାଉଛି କାଳୀୟ ନାଗ—

ଗଣ ବା "ଗଣଦେବତା"ଙ୍କୁ ଶିବର କଳ୍ପନା କରାଯାଇପାରେ **ଅଥବା ସୁପ୍ତ ବାସୁକୀର କଳ୍ପନା କରାଯାଇ ପାରେ । ସୁସୁପ୍ତା-ବସ୍ଥାରେ 'ଗଣ'କୁ କ୍ଷମତାହୀନ, ନିର୍ଜୀବ ବସ୍ତୁ ମନେ କରାଯାଇ ପାରେ** । ମାତ୍ର ଗଣର ପ୍ରତିହିଂସା ବୃତ୍ତି ଓ ପ୍ରତିରୋଧ ଶକ୍ତିକୁ ଭୁଲି-

ଯିବା ମୂର୍ଖତା ମାତ୍ର । ଗଣର ସ୍ୱତନ୍ତ୍ର ମନୋବିଜ୍ଞାନ ଅଛି । ଜନନାୟକ ତାହା ନ ଜାଣିଲେ ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼େ—ଏପରି କି ପ୍ରାଣହାନି ଘଟେ । ରାଷ୍ଟ୍ର-ଯନ୍ତ୍ର ପଶ୍ଚାତରେ ଗଣର ଆଶୀର୍ବାଦ ନଥିଲେ ରାଷ୍ଟ୍ର ବିଭ୍ରାଟ ଘଟେ । ବୁଦ୍ଧିମାନ ଜନନାୟକ ଗଣ ବା ରାଷ୍ଟ୍ର ଉପରେ ପ୍ରଭୁତ୍ୱ ଅଭିମାନ ନ ରଖି ନିଜକୁ ଦାସ ବା ସେବକ ମନେ କରିଥାଏ । ସୁବିଧାବାଦୀ ଜନନାୟକକୁ ବହୁ ପ୍ରାୟଶ୍ଚିତ କରିବାକୁ ପଡ଼େ ।

## ୨୦ । ଅଗଷ୍ଟ ବିପ୍ଲବ—

ବହୁ ସ୍ୱଦେଶପ୍ରେମୀ ଯୁବକଙ୍କର ବନ୍ଦୀ ଅବସ୍ଥାରେ ଐକ୍ୟ ସଙ୍ଗୀତ ।

## ୨୧ । ବୁଲାକୁତୀ—

ସହରର ଅତି ସାଧାରଣ ଦୃଶ୍ୟ । କୁକୁର-ଧରା ଗାଡ଼ିପରି ମଣିଷ ବେକରେ ଯେ ତାର ଲାଗେ ସେକଥା ମାନବ-ମାତାଙ୍କର ଅନୁଭୂତି ବହିର୍ଭୂତ ହୋଇଥିବାରୁ କଥାଟାକୁ ସେ ନିଜଠାରେ ଅତି ସହଜରେ ଆରୋପ କରିଅଛନ୍ତି । ସାଧାରଣ ଭାବରେ ଏ ବୃହତ୍ତର ଖନ୍ଦା ଏତେ ନଗଣ୍ୟ ଓ ସୁଲଭ ଯେ ସେଥିରେ ମାନବ ଓ କୁକୁର ଶିଶୁ ଏକତ୍ର ପଂକ୍ତି-ଭୋଜନ କରିପାରନ୍ତି ।

## ୨୨ । ବିଲ୍ୱମଙ୍ଗଳ—

ବୈଷ୍ଣବ ସାହିତ୍ୟ ଓ ଇତିହାସରେ ବିଲ୍ୱମଙ୍ଗଳଙ୍କର ସ୍ଥାନ ଏପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଛି । ସାଧକ ସିଦ୍ଧିଲାଭ କଲା ପୂର୍ବରୁ ସାଧାରଣ କ୍ଷୁତ୍ ପିପାସା ପୀଡ଼ିତ ମୋହାବିଷ୍ଟ ଯୁବକ ଥିଲେ । ତାଙ୍କର ଜ୍ଞାନ

ଚକ୍ଷୁ ଖୋଲିଦେଇଛନ୍ତି ଜଣେ ପତିତା, ସମାଜବହିର୍ଭୂତା ନାରୀ । ପତିତାର ଆଦର୍ଶ, ପ୍ରେମ ଓ ସତ୍ୟ ନିଦର୍ଶନ ହାସ୍ୟାସ୍ପଦ ବସ୍ତୁ ହେଲେ ମଧ୍ୟ ଭାରତରେ ଏହା ତାହା ସମ୍ଭବପର ହୋଇପାରିଅଛି । ଏ ସମ୍ପର୍କରେ ଅପର ପତିତା— "ଅମ୍ବପାଲୀ"ଙ୍କର ଦୃଷ୍ଟାନ୍ତ ତୁଳନୀୟ । ୨୩ ଓ ୨୫—ରୋମାଣ୍ଟିକ୍ ବା ରୋମାଞ୍ଚକର ରଚନା । ସୁବୋଧ ହେତୁ ଟୀକା ନିଷ୍ପ୍ରୟୋଜନ ।

## ୨୪ । ଗର୍ଦ୍ଦଭର ଦୁର୍ଗାପୂଜା—

ପୂଜାର ଅଧିକାର ନଥିଲେ ମଧ୍ୟ ଦେବତାରାଜ୍ୟରେ ଗର୍ଦ୍ଦଭର ସ୍ଥାନ ଅଛି—ବିଶେଷତଃ ତଥାଗତଙ୍କର ଜନ୍ମଭୂମି ପାଟଳିପୁତ୍ର ମହାନଗରୀରେ । ପୂଜା-ରାତିରେ ଲକ୍ଷକୋଟି ନିଃସ୍ୱଙ୍କର ମୁଖପାତ୍ର ହୋଇ ସେ "ବିଶ୍ୱ-ଜନନୀ"ଙ୍କ ଆଗେ ବଞ୍ଚିରହିବାର ଧୃଷ୍ଟତା ଜ୍ଞାପନ କରିଛି, ଚିତ୍କାର କରି । ପୂଜାରାତିରେ ଘଟଣାଟି ଲେଖକର ପ୍ରତ୍ୟକ୍ଷାନୁଭୂତ ।

## ୨୬ । ଭ୍ରଷ୍ଟକବି—

ଜଣେ ଉଦୀୟମାନ ଯୁବକ ଖାଦ୍ୟ, ବସ୍ତ୍ର, ଶିକ୍ଷା, ପରିଶେଷରେ ସାମାଜିକ ସ୍ନେହପ୍ରୀତିରୁ ବଞ୍ଚିତ ହୋଇ ବିକୃତ ମସ୍ତିଷ୍କ ହୋଇଥିଲେ । ସେ କିପରି ସୁସ୍ଥ-ମସ୍ତିଷ୍କ ହେବେ ତାହା ସମାଜ-ପତିମାନଙ୍କର ବିଚାର୍ଯ୍ୟ । କାରଣ କୃତିତ୍ୱ ଯାହାର, ଦାୟିତ୍ୱ ତାଙ୍କର ।

## ୨୭ । ପତ୍ନୀ—

ଅନାଦି କାଳର ରହସ୍ୟ ବା ମାୟା ଅତି ବାସ୍ତବରୂପେ ଦୃଶ୍ୟମାନ । ସତ୍ୟରେ ଆତ୍ମାକୁ ଅସ୍ୱୀକାର କରି ଦେହକୁ ମନ୍ଦିର

ଆଖ୍ୟା ଦିଆଯାଇଅଛି । ଦେହକୁ ଯଦି ଆଧୁନିକ ମନୋବିଜ୍ଞାନ ସମ୍ମତ ଦେହ-ମନ ବା ଦେହ-ଆତ୍ମା କୁହାଯାଏ, ଲେଖକର କିଛି ଅଭିଯୋଗ ନାହିଁ ।

୨୮ । ସତ୍ୟହେଉ ଉ:ଅ—

ଯୁଗେ ଯୁଗେ ଦାର୍ଶନିକ, କବି, ନବୀନଯୁଗର ସ୍ୱପ୍ନ ଦେଖି-ଅଛନ୍ତି ଓ ସେ ପୁଗର ଜୟଗାନ କରିଅଛନ୍ତି । ଏହା ଏ ଯୁଗ କବିର ସ୍ୱପ୍ନ ମାତ୍ର ।